# ଉଷାଭିଳାଷ

ଶିଶୁ ଶଙ୍କର ଦାସ

ସମ୍ପାଦନା

ଅଧ୍ୟାପକ ଶ୍ରୀଧର ଦାସ



# ଉଷାଭିଳାଷ

ଶିଶୁ ଶଙ୍କର ଦାସ

ସମ୍ପାଦନା

ଅଧ୍ୟାପକ ଶ୍ରୀଧର ଦାସ



# ଭୂମିକା

## କବି-ପରିଚୟ

ଉଷାଭିଳାଷର ରଚୟିତା ଶିଶୁଶଙ୍କର ଦାସ ଜଣେ ଉଚ୍ଚକୋଟୀର କବି ହୋଇଥିଲେ ହେଁ, ତାହାଙ୍କର ବିଶେଷ ପରିଚୟ ମିଳେ ନାହିଁ । କବି ନିଜ କୃତିରେ ତାଙ୍କର ପରିଚୟ ଦେଇ ନାହାନ୍ତି । ହଣ୍ଟର ସାହେବଙ୍କ ମତରେ ସେ ସପ୍ତଦଶ ଶତାବ୍ଦୀରେ ବିଦ୍ୟମାନ ଥିଲେ ଓ ବିଶ୍ୱନାଥ ପଞ୍ଚପୋଷୀଙ୍କ କୃତ ସଂସ୍କୃତ ଉଷାପରିଣୟ ନାଟକକୁ ଓଡ଼ିଆରେ ଉଷାଭିଳାଷ ନାମରେ ଅନୁବାଦ କରିଥିଲେ । କିନ୍ତୁ ସଂସ୍କୃତ ଉଷାପରିଣୟ ନାଟକର ଅସ୍ତିତ୍ୱ ଆଜି ପର୍ଯ୍ୟନ୍ତ ଜଣାଯାଇ ନାହିଁ । ଶିଶୁଶଙ୍କର ମଧ୍ୟ ତାଙ୍କ କାବ୍ୟରେ କୌଣସିଠାରେ ସୂଚନା ଦେଇ ନାହାନ୍ତି ଯେ ଏହା ଏକ ସଂସ୍କୃତ ରଚନାର ଅନୁବାଦ । ଉଷାଭିଳାଷ ପାଠ କଲେ ସ୍ପଷ୍ଟ ଅନୁମିତ ହୁଏ ଯେ ଏହା ପୌରାଣିକ ବିଷୟବସ୍ତୁ ଉପରେ ପ୍ରତିଷ୍ଠିତ ଏକ ମୌଳିକ କାବ୍ୟ । ତେଣୁ ହଣ୍ଟରଙ୍କ ମତ ଉପରେ ଆସ୍ଥା ସ୍ଥାପନ କରିହୁଏ ନାହିଁ ।

କବିଙ୍କର ପରିଚୟ ଜାଣିବା ପାଇଁ ଚେଷ୍ଟା କରିବାକୁ ହେଲେ ଆମକୁ ପ୍ରଥମେ କବିଙ୍କ ନାମରେ ସଂଯୁକ୍ତ ଶିଶୁ ଶବ୍ଦଟି ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ଏହି ଶବ୍ଦଟିର ଗୋଟିଏ ବୈଶିଷ୍ଟ୍ୟ ଅଛି । ଚୈତନ୍ୟ

ଦେବଙ୍କ ସମସାମୟିକ ପଞ୍ଚସଖା ମଧ୍ୟରୁ ଅନନ୍ତ ଦାସ ଅନ୍ୟତମ । ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତରୁ ଜଣାଯାଏ ଯେ ଅନନ୍ତ ଦାସ ଯୋଗବଳରେ ଶିଶୁ ରୂପ ଧରି ରୁକ୍ମିଣୀଙ୍କ କୋଳରେ ଥିଲେ । ଜଗନ୍ନାଥ ଦାସ ତାଙ୍କୁ ଚିହ୍ନି ନ ପାରିବାରୁ ସେ ନିଜ ରୂପ ଧାରଣ କରିଥିଲେ । ସେହି ଦିନଠାରୁ ସେ ଶିଶୁ ଅନନ୍ତ ନାମରେ ଖ୍ୟାତ ହେଲେ । ଏଥିରୁ ଜଣାଯାଏ ଯେ ଅନନ୍ତ ଦାସଙ୍କ ପୂର୍ବରୁ ଅନ୍ୟ କେହି ନିଜ ନାମ ସହିତ ଶିଶୁଶବ୍ଦ ଯୋଗ କରି ନ ଥିଲେ । ଅନନ୍ତ ଦାସଙ୍କର ବଂଶଧରମାନେ ଏହି ଶିଶୁ ଶବ୍ଦ ବ୍ୟବହାର କରି- ଆସୁଛନ୍ତି । ଏବେ ମଧ୍ୟ କେତେକ 'ଶିଶୁ କରଣ' ବୋଲି ନିଜର ଜାତି ପରିଚୟ ଦେଇଥାନ୍ତି ।

ରାମବିଭାର କବି ଅର୍ଜୁନ ଦାସ ନିଜକୁ ଶିଶୁ ଅର୍ଜୁନ ଦାସ ବୋଲି କହିଅଛନ୍ତି । କଳ୍ପଲତାର କବିଙ୍କ ନାମ ମଧ୍ୟ ଶିଶୁ ଅର୍ଜୁନ ଦାସ । ତେଣୁ ଅନନ୍ତ ଦାସଙ୍କ ପରେ ଶିଶୁଶଙ୍କର ବିଦ୍ୟମାନ ଥିଲେ କୁହାଯାଇପାରେ ।

ଶଙ୍କର ଦାସ ନାମକ ଜଣେ କବି 'ବାରମାସୀ କୋଇଲି' ରଚନା କରିଅଛନ୍ତି । ଏଥିରେ ଶ୍ରୀରାମ ବନବାସ କାଳରେ ଭୋଗୁ- ଥିବା ବାରମାସର କଷଣ କୌଶଲ୍ୟାଙ୍କ ବିଳାପ ଛଳରେ କରୁଣ ରସରେ ବର୍ଣ୍ଣିତ । ବାରମାସୀ କୋଇଲି ରଚନାର କାଳ ନିର୍ଣ୍ଣୀତ ହୋଇନାହିଁ । ଏହାର ରଚୟିତା ଶଙ୍କର ଦାସ ହୁଏତ ଉଷାଭିଳାଷର ରଚୟିତା ଶିଶୁଶଙ୍କର ଦାସଙ୍କ ଠାରୁ ଅଭିନ୍ନ ।

ଭାଷାତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଶିଶୁଶଙ୍କର କେତେକ ପ୍ରାଚୀନ ଶବ୍ଦ ବ୍ୟବହାର କରିଅଛନ୍ତି । ଯଥା— ମସ୍ଥାଣ, କହ୍ନୁ, ହେନ, କରହ, ଆରେଣି ଇତ୍ୟାଦି । ସାରଳା ଦାସଙ୍କ

ମହାଭାରତରେ ମଧ୍ୟ ଏପ୍ରକାର ଶବ୍ଦର ପ୍ରୟୋଗ ଦେଖାଯାଏ । ତେଣୁ ଶିଶୁଶଙ୍କରଙ୍କୁ ସାରଳାଙ୍କର ପରବର୍ତ୍ତୀ କୁହାଯାଇପାରେ ।

କାର୍ତ୍ତିକ ଦାସଙ୍କ ରୁକ୍ମିଣୀବିଭା, ପ୍ରତାପ ରାୟଙ୍କ ଶଶିସେଣା ପଦ୍ମନାଭ ଶ୍ରୀଚନ୍ଦନଙ୍କ ଶଶିରେଖା, ଲୋକନାଥଙ୍କ ଚନ୍ଦ୍ରକଳା, ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ ଓ ଧନଞ୍ଜୟଙ୍କ ରତ୍ନମଞ୍ଜରୀର କେତେକ ଛାନ୍ଦରେ ଉଷାଭିଳାଷର ବିଶେଷ ବିଶେଷ ଛାନ୍ଦର ରାଗ-ରାଗିଣୀ ନିର୍ଦ୍ଦେଶ କରାଯାଇଅଛି । ତେଣୁ ଏହିସବୁ କାବ୍ୟର ରଚନା ବେଳକୁ ଶିଶୁଶଙ୍କରଙ୍କର ଉଷାଭିଳାଷ ଯଥେଷ୍ଟ ଜନପ୍ରିୟତା ଅର୍ଜନ କରି ସାରିଥିଲା । ରୁକ୍ମିଣୀ ବିଭାର ନବମ ଛାନ୍ଦକୁ ଉଷାଭିଳାଷର ଦ୍ୱିତୀୟ ଛାନ୍ଦ ବାଣୀରେ, ଶଶିସେଣାର ତୃତୀୟ ଛାନ୍ଦକୁ ଉଷାଭିଳାଷର ଦ୍ୱିତୀୟ ଛାନ୍ଦ ବାଣୀରେ, ଶଶିରେଖାର ଦ୍ୱାବିଂଶ ଛାନ୍ଦକୁ ଉଷା-ଭିଳାଷର 'ପଙ୍କଜ ବଦନ ଲୁଚନ' ଅର୍ଥାତ୍ ଏକାଦଶ ଛାନ୍ଦ ବାଣୀରେ, ଚନ୍ଦ୍ରକଳାର ଦ୍ୱିତୀୟ ଛାନ୍ଦକୁ ଉଷାଭିଳାଷର ଦ୍ୱିତୀୟ ଛାନ୍ଦ ବାଣୀରେ, ଲୀଳାବତୀର ନବମ ଛାନ୍ଦକୁ ଉଷାଭିଳାଷର 'ଭାବକୁ ନିକଟ ଯେ ଜଗତବନ୍ଧୁ' ଅର୍ଥାତ୍ ଷଷ୍ଠ ଛାନ୍ଦ ବାଣୀରେ, ରତ୍ନମଞ୍ଜରୀର ପଞ୍ଚଦଶ ଛାନ୍ଦକୁ ଉଷାଭିଳାଷର ଉକ୍ତ ଷଷ୍ଠ ଛାନ୍ଦ ବାଣୀରେ ଗାଇବାକୁ ନିର୍ଦ୍ଦେଶ ଦିଆଯାଇଅଛି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ କବି ଶିଶୁ-ଶଙ୍କର ଏହିସବୁ କାବ୍ୟର ରଚୟିତାମାନଙ୍କର ଯଥେଷ୍ଟ ପୂର୍ବବର୍ତ୍ତୀ ।

ରୁକ୍ମିଣୀବିଭାର କବି କାର୍ତ୍ତିକ ଦାସ ଷୋଡ଼ଶ ଶତାବ୍ଦୀର ଶେଷ ବା ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗର କବି । ବାଣପୁରର ରାଜା ରଘୁନାଥ ହରିଚନ୍ଦନ ୧୬୫୦ ଠାରୁ ୧୬୭୦ ମସିହା ମଧ୍ୟରେ ଲୀଳାବତୀ କାବ୍ୟ ରଚନା କରିଥିଲେ । କବି ଲୋକନାଥ ବିଦ୍ୟାଧର ଉପେନ୍ଦ୍ରଙ୍କର ସାମାନ୍ୟ ପୂର୍ବବର୍ତ୍ତୀ । ଧୁମୁସରରାଜା ଧନଞ୍ଜୟଙ୍କ ରତ୍ନମଞ୍ଜରୀ ପ୍ରାୟ ୧୬୫୫ ମସିହା ବେଳକୁ ଲିଖିତ ବୋଲି ଅନୁମାନ

କରାଯାଏ । ଧନଞ୍ଜୟ ୧୬୩୦ ରେ ଜନ୍ମଗ୍ରହଣ କରି ୧୬୫୫ ରେ ସିଂହାସନାରୋହଣ କରିଥିଲେ । ୧୭୦୧ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ଘଟିଥିଲା । ଯୌବନକାଳରେ ସେ ରତ୍ନମଞ୍ଜରୀ କାବ୍ୟ ଲେଖିଥିଲେ ବୋଲି ଧରିନେଲେ, ଏହା ୧୬୫୫ ଠାରୁ ୧୬୬୦ ମଧ୍ୟରେ ରଚିତ ହୋଇଥିଲା ବୋଲି ବୁଝାଯାଇ ପାରେ ।

ଉଷାଭିଳାଷ ପ୍ରସିଦ୍ଧି ଲାଭ କରିବାକୁ ଶତାଧିବର୍ଷ ଲାଗିଯାଇ ଥିବ; କାରଣ ସେ କାଳରେ ମୁଦ୍ରାଯନ୍ତ୍ର ନ ଥିଲା, ଗମନାଗମନର ସୁଯୋଗ ନିତାନ୍ତ ସୀମାବଦ୍ଧ ଥିଲା । କେହି କୌଣସି ଗ୍ରନ୍ଥ ବିଷୟରେ ଆଗ୍ରହୀ ହେଲେ ଲେଖକ ତାଳପତ୍ର ସାହାଯ୍ୟରେ ତାହାକୁ ନକଲ କରିବା ବା କରାଇବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଉପର୍ଯ୍ୟୁକ୍ତ କବିମାନଙ୍କର ରଚନା ପ୍ରାୟ ୧୬୫୦ ଠାରୁ ୧୬୬୦ ମଧ୍ୟରେ ହୋଇଥିବାରୁ ଶିଶୁଶଙ୍କର ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ୧୫୫୦-୧୫୬୦ ଖ୍ରୀଷ୍ଟାବ୍ଦରେ ଉଷାଭିଳାଷ ରଚନା କରିଥିଲେ ବୋଲି ଗ୍ରହଣ କରିବା ଅଯୌକ୍ତିକ ହୋଇ ନ ପାରେ ।

ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ ଶଙ୍କର ଦାସ କରୁଣ-ରସାତ୍ମକ ବାରମାସୀ କୋଇଲି ରଚନା କରିଥିଲେ । ରାମ ବନବାସ କାଳରେ କପୋତ ବାରମାସଯାକ କଟାଇଥିଲେ, ତାହା କୌଶଲ୍ୟା ବିଳାପ କରିଅଛନ୍ତି । ଏହାଙ୍କ ସମୟ ଜଣା ନାହିଁ ।

ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ମତରେ ଶିଶୁଶଙ୍କର ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗର ଓଡ଼ିଆ କବି, ଉଷାଭିଳାଷର ରଚୟିତା ।

କବିଙ୍କର ଜନ୍ମସ୍ଥାନ ବିଷୟରେ ଅନୁମାନ କରିବା ପାଇଁ କୌଣସି ଉପାଦାନ ମିଳେ ନାହିଁ ।

# ଉଷାଭିଳାଷର ବିଷୟବସ୍ତୁ

ଉଷା ଓ ଅନିରୁଦ୍ଧଙ୍କର ପ୍ରଣୟକୁ ଅବଲମ୍ବନ କରି କାବ୍ୟଟି ବିରଚିତ । ଏହାର ବିଷୟବସ୍ତୁ କବିଙ୍କର କପୋଳକଳ୍ପିତ ନୁହେଁ ।

ସାରଳା ମହାଭାରତର ମଧ୍ୟପର୍ବରେ, ଶ୍ରୀମଦ୍‌ଭାଗବତ ଦଶମ ସ୍କନ୍ଧର ୬୨ତମ ଓ ୬୩ତମ ଅଧ୍ୟାୟରେ ଓ ହରିବଂଶରେ ଉଷା-ଅନିରୁଦ୍ଧ ଉପାଖ୍ୟାନ ବର୍ଣ୍ଣିତ ଅଛି ।

ଏ ତିନି ଗ୍ରନ୍ଥର ମୂଳ କଥା ଏକ ହେଲେ ହେଁ, ବର୍ଣ୍ଣନାରେ ସାମାନ୍ୟ ପ୍ରଭେଦ ଦେଖାଯାଏ ।

ସାରଳାଙ୍କ ମହାଭାରତରେ ବର୍ଣ୍ଣିତ ଅଛି ଯେ, ବୈତରଣୀ ତୀରରେ ଶୋଣିତପୁରର ରାଜା ଥିଲେ ବାଣାସୁର । ଶିବଙ୍କ ବରରେ ସେ ସହସ୍ର ବାହୁ ଧାରଣ କରିଥିଲେ । ତାଙ୍କର ରୂପ-ଯୌବନସମ୍ପନ୍ନା କନ୍ୟା ଉଷା ଉପବନରେ ବିହାର କରୁଥିବା ସମୟରେ କାମପୀଡ଼ିତା ହେଲେ । ଦିନେ ରାତିରେ ସେ ସ୍ୱପ୍ନରେ ଦେଖିଲେ ଯେ ଜଣେ ରୂପବନ୍ତ ପୁରୁଷ ତାଙ୍କୁ ଆଲିଙ୍ଗନ କରି ତାଙ୍କ ସଙ୍ଗେ ବିହାର କରୁଅଛି । ନିଦ୍ରାଭଙ୍ଗ ପରେ ସେ ପ୍ରିୟସଖୀ ଚିତ୍ରରେଖାଙ୍କୁ ସ୍ୱପ୍ନବୃତ୍ତାନ୍ତ କହିଲେ । ସ୍ୱପ୍ନଦୃଷ୍ଟ ଯୁବକର ପରିଚୟ ଜାଣିବା ପାଇଁ ଚିତ୍ରରେଖା ତାଙ୍କୁ ଚିତ୍ରପଟମାନ ଦେଖାଇଲେ । ସେଥିରେ ଉଷା ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କୁ ଦେଖାଇବାରୁ ଚିତ୍ରରେଖା ମାୟାବଳରେ ଦ୍ୱାରକାରେ ପହଞ୍ଚିଲେ ଓ ମନ୍ତ୍ରବଳରେ ଅନିରୁଦ୍ଧଙ୍କୁ ଉଷାଙ୍କ ଶୟନକକ୍ଷକୁ ନେଇ ଆସିଲେ । ଉଷା ଓ ଅନିରୁଦ୍ଧ ପରସ୍ପର ପ୍ରଣୟରେ ରତ ହୋଇ ପଶା ଖେଳୁଥିବା ସମୟରେ ଦାସୀମାନେ ତାହା ଜାଣିପାରି ବାଣାସୁରଙ୍କୁ ଜଣାଇଲେ । ବାଣାସୁର ଆସି ଅନିରୁଦ୍ଧଙ୍କ ସଙ୍ଗେ ପ୍ରବଳ ଯୁଦ୍ଧ କରି ତାଙ୍କୁ ଅଚେତନ କରି

ପଠାଇଲେ । ନାରଦ ଏହି ସମ୍ବାଦ ଦ୍ୱାରକାରେ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ଦେବାରୁ ସେମାନେ ସସୈନ୍ୟ ଆସି ବାଣାସୁର ସଙ୍ଗେ ଯୁଦ୍ଧ କଲେ । ଏହି ସମୟରେ ଶିବ ବାଣାସୁରଙ୍କୁ ସାହାଯ୍ୟ କଲେ । ଶେଷରେ ବାଣାସୁର ପରାସ୍ତ ହୋଇ ଅନିରୁଦ୍ଧଙ୍କ ସହିତ ଉଷାର ବିବାହ ଦେଲି ।

ସାରଳା ମହାଭାରତର ବର୍ଣ୍ଣନାଠାରୁ ଶିଶୁଶଙ୍କରଙ୍କ ବର୍ଣ୍ଣନାରେ ନିମ୍ନଲିଖିତ ପ୍ରଭେଦ ଦୃଷ୍ଟିଗୋଚର ହୁଏ ।

(୧) ସାରଳାଙ୍କ ଅନୁସାରେ ଶୋଣିତପୁର ବୈତରଣୀ ତଟରେ ଅବସ୍ଥିତ ଥିଲି; କିନ୍ତୁ ଉଷାଭିଳାଷରେ ଶୋଣିତପୁରର ଅବସ୍ଥାନ ନିର୍ଦ୍ଦେଶ କରାଯାଇ ନାହିଁ ।

(୨) ସାରଳାଙ୍କ ମତରେ ଉଷାଙ୍କ ସଖୀର ନାମ ଚିତ୍ରରେଖା, କିନ୍ତୁ ଶିଶୁଶଙ୍କର ତାଙ୍କୁ ଚିତ୍ରଲେଖା ବୋଲି ଅଭିହିତ କରିଅଛନ୍ତି ।

(୩) ଶିବଙ୍କ ପ୍ରାର୍ଥନାରେ ଯଦୁବଂଶ ସହିତ ବାଣାସୁରଙ୍କର ଯୁଦ୍ଧ ବନ୍ଦ ହୋଇଥିଲି ବୋଲି ସାରଳା କହିଅଛନ୍ତି । କିନ୍ତୁ ଶିଶୁ ଶଙ୍କର ଲେଖିଅଛନ୍ତି ଯେ ଶିବ ଓ କୃଷ୍ଣଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ହୋଇଥିଲି, ତାହା ବ୍ରହ୍ମାଙ୍କ ମଧ୍ୟସ୍ଥତାରେ ବନ୍ଦ ହୋଇଥିଲି ।

ଶ୍ରୀମଦ୍‌ଭାଗବତରେ ବର୍ଣ୍ଣିତ ଅଛି ଯେ ବଳିର ଶତପୁତ୍ର ମଧ୍ୟରେ ବାଣାସୁର ଜ୍ୟେଷ୍ଠ । ଶିବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ସେ ସହସ୍ରବାହୁ ହୋଇଥିଲି । ନିଜର ଉପଯୁକ୍ତ ପ୍ରତିପକ୍ଷ ନ ପାଇ ସେ ଶିବଙ୍କୁ ପ୍ରାର୍ଥନା କଲି । ଶିବ କ୍ରୁଦ୍ଧ ହୋଇ କହିଲେ—

"ବୋଇଲେ, ଶୁଣ ବାଣା ବୀର
ରଥେ ଯେ ଅଛୁ ଧ୍ୱଜା ତୋର ।
ତାର ପତାକା ଯେତେବେଳେ
ଛିଡ଼ି ପଡ଼ିବ ଭୂମିତଳେ ।
ଏ ଭୁଜ ଗର୍ବ ନାଶିବାରେ
ଶତ୍ରୁ ମିଳିବେ ତୋର ପୁରେ ।"

ବାଣାସୁରର କନ୍ୟା ସୁନ୍ଦରୀ ଉଷାର ଯୌବନ ଉପସ୍ଥିତ ହେବାରୁ ସେ ତାକୁ ଗୋଟିଏ ଦୁର୍ଗମ ପୁରରେ ସଖୀମାନଙ୍କ ସହ ରଖାଇଲା । ଦିନେ ସ୍ୱପ୍ନରେ ପ୍ରଦ୍ୟୁମ୍ନପୁତ୍ର ଅନିରୁଦ୍ଧ ଉଷା ସହିତ ମିଳିତ ହେଲେ । ଉଷାର ପ୍ରିୟ ସଖୀ ଚିତ୍ରରେଖା ବାଣାସୁରର ମନ୍ତ୍ରୀ କୁମ୍ଭାଣ୍ଡର କନ୍ୟା । ଉଷା ସ୍ୱପ୍ନଭଙ୍ଗ ପରେ ବିକଳ ହୋଇ ଚିତ୍ରରେଖାକୁ ସବୁ କଥା ଜଣାଇଲେ ଓ ସ୍ୱପ୍ନଦୃଷ୍ଟ ପୁରୁଷକୁ ଆଣିବାକୁ କହିଲେ । ଚିତ୍ରରେଖା ସବୁ ଶ୍ରେଷ୍ଠ ଦେବ, ଗନ୍ଧର୍ବ, ଦାନବ, ମାନବ ପ୍ରଭୃତିଙ୍କର ଚିତ୍ର ଲେଖିବାରୁ ଉଷା ସେମାନଙ୍କ ମଧ୍ୟରୁ ଅନିରୁଦ୍ଧଙ୍କୁ ଦେଖାଇଦେଲେ । ଯୋଗମାୟାବଳରେ ଚିତ୍ରରେଖା ଦ୍ୱାରକାରୁ ଶଯ୍ୟା ସହିତ ଅନିରୁଦ୍ଧଙ୍କୁ ଆଣି ଉଷାଙ୍କ ଶୟନକକ୍ଷରେ ପହଞ୍ଚାଇ ଦେଲେ । ଉଭୟେ ଅତି ଆନନ୍ଦରେ କିଛି ଦିନ ଅତିବାହିତ କଲେ । ଦାସୀମାନେ ଉଷାର ଶରୀରରେ ରତିଚିହ୍ନ ଦେଖି ବାଣାସୁରକୁ ଜଣାଇଲେ । ସେ ଧନୁଶର ଧରି ସେଠାରେ ପହଞ୍ଚିଲା ଓ ଉଷାଙ୍କ ଅନ୍ତଃପୁରରେ ଅନିରୁଦ୍ଧଙ୍କୁ ଦେଖି ତାଙ୍କୁ ଆକ୍ରମଣ କଲା । ବହୁକାଳ ଯୁଦ୍ଧ ପରେ ବାଣାସୁର ଅନିରୁଦ୍ଧଙ୍କୁ ନାଗପାଶ ବନ୍ଧନରେ ବାନ୍ଧି ପକାଇଲା ।

ଦ୍ୱାରକାରେ ଅନିରୁଦ୍ଧଙ୍କୁ ନ ଦେଖି ସମସ୍ତେ ଚିନ୍ତିତ ହେଲେ । ଚାରିମାସ ପରେ ଦିନେ ନାରଦ ଉପସ୍ଥିତ ହୋଇ ରାମକୃଷ୍ଣଙ୍କୁ

ଜଣାଇଲେ ଯେ, ଅନିରୁଦ୍ଧ ବାଣାସୁର ଦ୍ୱାରା ଶୋଣିତପୁରରେ ନାଗପାଶ ବନ୍ଧନରେ ପଡ଼ିଅଛନ୍ତି । ତହୁଁ 'ଦ୍ୱାଦଶ ଅକ୍ଷୌହିଣୀ' ସୈନ୍ୟ ଘେନି କୃଷ୍ଣ ବଳରାମ ପ୍ରଭୃତି ଯଦୁବୀର ଶୋଣିତପୁରକୁ ଗଲେ । ବାଣାସୁର ଶିବଙ୍କୁ ପ୍ରାର୍ଥନା କରିବାରୁ ଶିବ ରୁଦ୍ରଗଣ ସହ ତାକୁ ସାହାଯ୍ୟ କଲେ । ଉଭୟ ପକ୍ଷର ଯୁଦ୍ଧ ହେଲା । କାର୍ତ୍ତିକ ଓ ଗଣେଶ ମଧ୍ୟ ଶିବଙ୍କ ସଙ୍ଗରେ ରହିଲେ । ଶିବ ଓ କୃଷ୍ଣଙ୍କର ଯୁଦ୍ଧ ସର୍ବାପେକ୍ଷା ଭୀଷଣ ହେଲା । ତ୍ରିଭୁବନ କମ୍ପି ଉଠିଲା । ଉଭୟ ପକ୍ଷ ବିଭିନ୍ନ ପ୍ରକାର ଅସ୍ତ୍ର ପ୍ରୟୋଗ କରି ମଧ୍ୟ କେହି କାହାକୁ ପରାସ୍ତ କରି ପାରିଲେ ନାହିଁ । ଶେଷରେ ଶ୍ରୀକୃଷ୍ଣ ଶରାଘାତରେ ବାଣାସୁରକୁ ଭୂପତିତ କଲେ । ଶିବ ମଧ୍ୟ ମୋହପ୍ରାପ୍ତ ହେଲେ । ସେ ନିଜ ଶରୀରରୁ 'ତ୍ରିଶିର ତ୍ରିପାଦ' ଶିବ ଜ୍ୱର ଜାତ କରିବାରୁ କୃଷ୍ଣ ମଧ୍ୟ ତାଙ୍କ ଶରୀରରୁ ବିଷ୍ଣୁ ଜ୍ୱର ଜାତ କଲେ । ଯେ ଦୁହିଙ୍କର ମଧ୍ୟ ମହାଯୁଦ୍ଧ ହେଲା । ଶେଷରେ ଶିବଜ୍ୱର ଯୁଦ୍ଧରୁ ପଳାୟନ କଲା । କିନ୍ତୁ ସଂସାରରେ କୌଣସି ଠାରେ ଆଶ୍ରୟ ନ ପାଇ ଶ୍ରୀକୃଷ୍ଣଙ୍କର ଶରଣ ପଶିଲା । ଶ୍ରୀକୃଷ୍ଣ ତାକୁ ଅଭୟ ଦେଇ ବିଦାୟ କଲେ ।

ବାଣାସୁର ପୁଣି ଆସି ଯୁଦ୍ଧରେ ଯୋଗଦେଲା । ସେ ରଥରେ ବସି ଶ୍ରୀକୃଷ୍ଣଙ୍କ ଉପରେ ଶର ବୃଷ୍ଟି କଲା । ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ର ପେଷି ତାର ବାହୁମାନ ଛେଦିବାକୁ ଲାଗିଲେ । ତାର ଭୂଜ 'ବାମ ଦକ୍ଷିଣେ ବେଗେ ପଡ଼େ । ବୃକ୍ଷର ଡାଳ ଯେହ୍ନେ ଝଡ଼େ ।' ବାଣାସୁରର ଏ ଦୁରବସ୍ଥା ଦେଖି ଶିବ ଯୁଦ୍ଧ ତ୍ୟାଗ କଲେ ଓ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ—

"ଏ ବାଣାସୁର ଭକ୍ତ ମୋର
ପ୍ରିୟ ସୁହୃଦ ଅନୁଚର ।

ଏହାର ତପେ ତୋଷ ହୋଇ
ଅଭୟ ଦେଇଛୁ ଗୋସାଇଁ ।
ସେ ବର ପ୍ରତିପାଳ ତୁମ୍ଭ
ଏହାକୁ ଭଜିବ ତୋଷ ହୋଇ ।"

ଶ୍ରୀକୃଷ୍ଣଙ୍କ ଭକ୍ତ ପ୍ରହ୍ଲାଦର ପୁତ୍ର ବୈରୋଚନ; ବୈରୋଚନର ପୁତ୍ର ବଳି ଏବଂ ବଳିର ପୁତ୍ର ବାଣାସୁର । ନିଜ ଭକ୍ତର ବଂଶଧର ହୋଇଥିବାରୁ ତାକୁ ବଧ ନ କରି, କେବଳ ତାର ଗର୍ବ ନାଶ କରିବାକୁ ଶ୍ରୀକୃଷ୍ଣ ସ୍ଥିର କରି ତାର ଚାରିଟି ବାହୁ ରଖି ଅନ୍ୟ ବାହୁ ମାନ ଚକ୍ରରେ ଛେଦନ କଲେ । ବାଣାସୁର ଅନିରୁଦ୍ଧଙ୍କୁ ରଥରେ ବସାଇ କନ୍ୟା ଉଷା ସହିତ ଶ୍ରୀକୃଷ୍ଣଙ୍କୁ ସମର୍ପଣ କଲା । ଯାଦବ ଗଣଙ୍କ ସହିତ ଶ୍ରୀକୃଷ୍ଣ ଶିବଙ୍କୁ ପ୍ରଣାମ କରି ଦ୍ୱାରକା ପ୍ରସ୍ଥାନ କଲେ । ଦ୍ୱାରକାରମଣୀମାନେ ବରକନ୍ୟାଙ୍କୁ ଆଡ଼ମ୍ବର ସହକାରେ ଆଶୀର୍ବାଦ କଲେ ।

ଉଷାଭିଳାଷର ବର୍ଣ୍ଣନା ଅନୁସାରେ ଚିତ୍ରଲେଖା ଅନ୍ତରୀକ୍ଷ ମାର୍ଗରେ ଯାଇ ସମୁଦ୍ର ନିକଟରେ ନାରଦଙ୍କ ଠାରୁ ମନ୍ତ୍ର ପାଇ ଦ୍ୱାରକାପୁରରେ ପ୍ରବେଶ କଲେ ଓ ପଲଙ୍କ ସହିତ ଅନିରୁଦ୍ଧଙ୍କୁ ଉଷା ଅନ୍ତଃପୁରକୁ ନେଇଗଲେ । ପିତାମହ ବ୍ରହ୍ମାଙ୍କ ଦ୍ୱାରା ଶିବ ଯୁଦ୍ଧରୁ କ୍ଷାନ୍ତ ହୋଇଥିଲେ । ଶ୍ରୀକୃଷ୍ଣ ବାଣାସୁରକୁ ଚକ୍ରରେ ବଧ କରିବାକୁ ଉଦ୍ୟତ ହେବାରୁ ବ୍ରହ୍ମା ତାର ପ୍ରାଣରକ୍ଷା ଲଗି ଅନୁରୋଧ କଲେ ଓ ଶ୍ରୀକୃଷ୍ଣ ତାର ଦୁଇଟି ବାହୁ ରଖି ଅନ୍ୟଗୁଡ଼ିକ ଛେଦି ପକାଇଲେ । ଭାଗବତରେ ହରିହର ଯୁଦ୍ଧର ଯେପରି ବିଶଦ ବର୍ଣ୍ଣନା ଅଛି, ଉଷାଭିଳାଷରେ ସେପରି ନାହିଁ ।

ଶିଶୁ ଶଙ୍କର କହିଅଛନ୍ତି ଯେ ଶ୍ରୀକୃଷ୍ଣ ଅନ୍ତଃପୁରରେ ପ୍ରବେଶ କରିବାରୁ ନାଗପାଶ ଫିଟିଗଲା ଏବଂ ସେ ଅନିରୁଦ୍ଧ ଓ ଉଷାଙ୍କୁ

କୋଳରେ ବସାଇ ବାହୁଡ଼ିଥିଲେ । ଶୁଭଲଗ୍ନ ଯୋଗରେ ଦ୍ୱାରବତୀ ପୁରରେ ସେ ଦୁହିଁଙ୍କର ବିବାହ ହୋଇଥିଲା ।

ହରିବଂଶ ଅନୁସାରେ ବାଣାସୁର ସହସ୍ରବାହୁଧାରୀ ଜଣେ ରାକ୍ଷସ । କାର୍ତ୍ତିକେୟଙ୍କ ରୂପ ଦେଖି ସେ ତାଙ୍କ ପରି ମହାଦେବଙ୍କ ପୁତ୍ର ରୂପେ ଜାତ ହେବା କାମନାରେ କଠୋର ତପସ୍ୟା କଲା । ଶିବଙ୍କ ଦୟାରୁ ସେ କାର୍ତ୍ତିକେୟଙ୍କର ପ୍ରିୟ ହୋଇ ତାଙ୍କ ଠାରୁ ମୟୂରବାହନ ଓ ମୟୂରଧ୍ୱଜ ପାଇଥିଲା ।

ତାହାର କନ୍ୟା ଉଷାକୁ ଉମା କହିଥିଲେ, ବୈଶାଖ ଶୁକ୍ଳ ଦ୍ୱାଦଶୀରେ ସ୍ୱପ୍ନରେ ତୋର କାନ୍ତ ସହିତ ମିଳନ ହେବ । ଶିଶୁ ଶଙ୍କର ଶୁକ୍ଳ ତ୍ରୟୋଦଶୀ ବୋଲି କହିଅଛନ୍ତି । ସାରଳା ମହାଭାରତ ବା ଭାଗବତରେ ଏ ପ୍ରସଙ୍ଗ ଆଦୌ ନାହିଁ ।

ହରିବଂଶରେ ବର୍ଣ୍ଣିତ ଅଛି, ମନ୍ତ୍ରୀ କନ୍ୟା ଚିତ୍ରଲେଖା ଉମାଙ୍କର ସହଚରୀ । ଅପ୍ସରା ଚିତ୍ରଲେଖା ଯୋଗବିଦ୍ୟା ଓ ଚିତ୍ରବିଦ୍ୟା ସାହାଯ୍ୟରେ ଉଷା ଅନିରୁଦ୍ଧଙ୍କର ମିଳନ ଘଟାଇଥିଲା । କିନ୍ତୁ ଶିଶୁ ଶଙ୍କର ଉଷା ଅନିରୁଦ୍ଧଙ୍କର ମିଳନ ଏକମାତ୍ର ମନ୍ତ୍ରୀସୁତା ଚିତ୍ରଲେଖା ଦ୍ୱାରା ସମ୍ପାଦନ କରାଇଅଛନ୍ତି ।

ଏହି ଆଲୋଚନାରୁ ପ୍ରତିପନ୍ନ ହେବ ଯେ ଶିଶୁଶଙ୍କରଙ୍କ ଉଷାଭିଳାଷର ବିଷୟବସ୍ତୁ ସାରଳା ମହାଭାରତର, ହରିବଂଶର କିମ୍ବା ଭାଗବତର ବିଷୟବସ୍ତୁଠାରୁ ବିଶେଷ ପୃଥକ୍ ନୁହେଁ । କେବଳ ବିଭିନ୍ନ ଲେଖକ ବିଭିନ୍ନ ଦୃଷ୍ଟିକୋଣରୁ ବିଷୟର ଉପସ୍ଥାପନା କରି ଅଛନ୍ତି । ଭାଗବତକାର ଉଷା-ଅନିରୁଦ୍ଧଙ୍କ ପ୍ରଣୟ ଉପରେ ଗୁରୁତ୍ୱ ଆରୋପ ନ କରି ହରି-ହର ଯୁଦ୍ଧ ଉପରେ ଗୁରୁତ୍ୱ ଦେଇ କହି ଅଛନ୍ତି—

"ଏମନ୍ତେ ହରିହର ରଣ । ଯେ ନର କରନ୍ତି ଶ୍ରବଣ ।
ପ୍ରଭାତକାଳେ ପ୍ରତିଦିନେ । ଯେ ପ୍ରାଣୀ ଶୁଣେ ଶୁଦ୍ଧ ମନେ ।
ତାହାର ନାହିଁ ପରାଭବ । ନରତେ ରଖଇ ମାଧବ ।।"

ସଂସ୍କୃତ ଭାଗବତରେ ତଦ୍ରୂପ ହରିହର ରଣ ବିଷୟ ଶ୍ରବଣର ମାହାତ୍ମ୍ୟ କଥିତ ହୋଇଅଛି—

ଯ ଏତତ୍ କୃଷ୍ଣବିଜୟଂ ଶଙ୍କରେଣ ଚ ସଂଯୁଗମ୍ ।
ସଂସ୍ମରେତ୍ ପ୍ରାତରୁତ୍ଥାୟ ନ ତସ୍ୟ ସ୍ୟାତ୍ ପରାଜୟଃ ।।

ଶିଶୁ ଶଙ୍କରଙ୍କର ଉଦ୍ଦେଶ୍ୟ ଥିଲା ଊଷା ଓ ଅନିରୁଦ୍ଧଙ୍କର ପ୍ରଣୟ ବର୍ଣ୍ଣନା କରି ଏକ ଶୃଙ୍ଗାର ରସାତ୍ମକ କାବ୍ୟ ଲେଖିବା । ତେଣୁ ସେହି ଉଦ୍ଦେଶ୍ୟ ସାଧନ ନିମିତ୍ତ ସେ କାବ୍ୟସୁଲଭ ରୂପ ବର୍ଣ୍ଣନା, ଋତୁବର୍ଣ୍ଣନା, ଉପବନ ବିହାର ପ୍ରଭୃତିର ସମାବେଶ କରି ଅଛନ୍ତି । କବି ବିଷୟବସ୍ତୁ ନିମନ୍ତେ ହରିବଂଶ, ଭାଗବତ ବା ସାରଳା ମହାଭାରତର ଆଶ୍ରୟ ନେଇଥିବେ । କିନ୍ତୁ ସେଥିରୁ ସେ କଙ୍କାଳ ମାତ୍ର ଗ୍ରହଣ କରି ସ୍ୱୀୟ ପ୍ରଜ୍ଞା ଓ କବିତ୍ୱଶକ୍ତି ବଳରେ ଏକ ସୌଷ୍ଠବମୟୀ କାବ୍ୟସୁନ୍ଦରୀ ସୃଷ୍ଟି କରିପାରିଅଛନ୍ତି ।

## ଛାନ୍ଦକ୍ରମେ ଉଷାଭିଳାଷର ବିଷୟ ଉପସ୍ଥାପନା

ପ୍ରଥମ ଛାନ୍ଦ—ଜଗନ୍ନାଥଙ୍କ ସ୍ତୁତି (୧-୧୪ ପଦ); ଖଳନିନ୍ଦା ଓ ସାଧୁଗୁଣକୀର୍ତ୍ତନ (୧୫-୨୪ ପଦ); ବାଣାସୁରକୁ ଶିବଙ୍କର ବରପ୍ରଦାନ (୨୫-୩୯ ପଦ); ଉଷାର ପରିଚୟ (୪୦-୪୧ ପଦ) ।

ଦ୍ୱିତୀୟ ଛାନ୍ଦ—ଉଷାର ରୂପଲାବଣ୍ୟ ଓ କଳାନୈପୁଣ୍ୟର ବର୍ଣ୍ଣନା ।

ତୃତୀୟ ଛାନ୍ଦ—ଉଷା ବୟଃପ୍ରାପ୍ତା ହୁଅନ୍ତେ ତାହାର ଶରୀରରେ ପରିବର୍ତ୍ତନ (୧–୯ ପଦ); ବସନ୍ତକାଳରେ ଚିତ୍ରରେଖା ସହ ଉଷାର ଉପବନ ବିହାର (୧୦-୩୧ ପଦ); ଉଷାର କାମୋଦ୍ରେକ (୩୨-୪୧ ପଦ); ପ୍ରଭାତବର୍ଣ୍ଣନା (୪୨-୫୧ ପଦ) ।

ଚତୁର୍ଥ ଛାନ୍ଦ – ପ୍ରଭାତରେ ଉଷାର ସାତ୍ତ୍ୱିକ ବିକାର (୧-୧୦ ପଦ); ଗ୍ରୀଷ୍ମଋତୁ ବର୍ଣ୍ଣନା (୧୧-୧୭ ପଦ); ଉପବନ ସରୋବରରେ ଉଷାର ଉମାଶିବଙ୍କ ଜଳକେଳି ଦର୍ଶନ ଓ ନିଜ ବରପ୍ରାପ୍ତି ଜୀବନ ବିଷୟକ ଚିନ୍ତା (୧୮-୩୦ ପଦ); ଉମାଙ୍କର ଉଷାକୁ ବରଦାନ (୩୧-୩୨ ପଦ); ଅଭିଳାଷ ପୂରଣ ନିମନ୍ତେ ନିର୍ଦ୍ଦିଷ୍ଟ ଦିନକୁ ଉଷାର ଅପେକ୍ଷା (୩୩–୩୪ ପଦ); ସନ୍ଧ୍ୟା ଓ ରାତ୍ରି ବର୍ଣ୍ଣନା (୩୫–୪୬ ପଦ); ସ୍ୱପ୍ନରେ ଉଷା ସହ ଅନିରୁଦ୍ଧଙ୍କର ମିଳନ (୪୭–୫୦ ପଦ) ।

ପଞ୍ଚମ ଛାନ୍ଦ – ନିଦ୍ରାଭଙ୍ଗ ଅନ୍ତେ ଉଷାର ବିରହାନୁଚିନ୍ତା (୧-୩ ପଦ); ଚିତ୍ରଲେଖାର ଉଷାକୁ ଏହାର କାରଣ ଜିଜ୍ଞାସା ( ୪ ପଦ); ଉଷାକୁ ଚିତ୍ରଲେଖାର ଆଶ୍ୱାସନା (୫-୭ ପଦ); ଉଷାର ସ୍ୱପ୍ନବୃତ୍ତାନ୍ତ ପ୍ରକାଶ (୮-୯ ପଦ), ଚିତ୍ରଲେଖାର ଚିତ୍ରଅଙ୍କନ (୧୦ ପଦ); ଉଷାର ଚିତ୍ରପଟ ଦର୍ଶନ ଓ ସେଥିରେ ସପରିବାର ଅନିରୁଦ୍ଧଙ୍କୁ ପ୍ରଦର୍ଶନ (୧୧-୧୭ ପଦ); ଚିତ୍ରରେ ଅନିରୁଦ୍ଧଙ୍କୁ ଦେଖି ଉଷାର ଅନୁରାଗ ଲକ୍ଷଣ ପ୍ରକାଶ (୧୮-୨୨ ପଦ) ।

ଷଷ୍ଠ ଛାନ୍ଦ—ଅଶେଷ ଗୁଣର ଆଧାର ଶ୍ରୀକୃଷ୍ଣ; ତାଙ୍କର ପୁତ୍ର ମଦନ ଓ ମଦନର ପୁତ୍ର ଅନିରୁଦ୍ଧ; ତାଙ୍କୁ କପରି ପାଇବି ବୋଲି ଚିତ୍ରଲେଖାର ପ୍ରଶ୍ନ ଓ ତାଙ୍କୁ ଆଣିବା ପାଇଁ ପ୍ରତିଶ୍ରୁତି ପ୍ରଦାନ (୧-୧୬ ପଦ), ଉଷାର ଅନୁରୋଧକ୍ରମେ ଚିତ୍ରଲେଖାର ପ୍ରସ୍ଥାନ (୧୭-୨୨ ପଦ); ନାରଦଙ୍କଠାରୁ ଚିତ୍ରଲେଖାର ମନ୍ତ୍ରପ୍ରାପ୍ତି

ଓ ସମୁଦ୍ରମଧ୍ୟସ୍ଥ ଦ୍ୱାରବତୀ ପୁରରେ ପ୍ରବେଶ (୨୩-୨୫ ପଦ); ଚିତ୍ରଲେଖାର ଅନିରୁଦ୍ଧ ଦର୍ଶନ (୨୬-୩୧ ପଦ); ମନ୍ତ୍ରବଳରେ ଚିତ୍ରଲେଖାର ଅନିରୁଦ୍ଧଙ୍କୁ ଉଷାମନ୍ଦିରକୁ ଆନୟନ (୩୨-୩୩ ପଦ); ଉଷା ଅନିରୁଦ୍ଧ ମିଳନ (୩୫-୩୮ ପଦ)।

ସପ୍ତମ ଛାନ୍ଦ—ଅନିରୁଦ୍ଧଙ୍କ ଦର୍ଶନରେ ଉଷାର ଆନନ୍ଦ ପ୍ରକାଶ (୧-୩ ପଦ); ଉଷାଙ୍କୁ ଅନିରୁଦ୍ଧଙ୍କର ଗୂଢ଼ବାଣୀ (୪-୧୬ ପଦ); ଉଷା-ଅନିରୁଦ୍ଧ କେଳି ଓ ଗାନ୍ଧର୍ବ ବିବାହ ବର୍ଣ୍ଣନା (୧୭-୧୯ ପଦ);

ଅଷ୍ଟମ ଛାନ୍ଦ—ଉଷା ଅନିରୁଦ୍ଧଙ୍କର ରତିକ୍ରୀଡ଼ା ବର୍ଣ୍ଣନା।

ନବମ ଛାନ୍ଦ—ଚନ୍ଦ୍ର ରଜନୀରେ ଉଷା-ଅନିରୁଦ୍ଧଙ୍କର କେଳି ଓ ଅନିରୁଦ୍ଧଙ୍କ ଗୂଢ଼ୋକ୍ତି।

ଦଶମ ଛାନ୍ଦ—ବର୍ଷ ଋତୁର ବର୍ଣ୍ଣନା ଛଳରେ ଉଷା ପ୍ରତି ଅନିରୁଦ୍ଧଙ୍କ ଗୂଢ଼କଥନ (୧-୧୪ ପଦ); ଦୁର୍ବୀଙ୍କର ପଶାଖେଳ ଓ ରାଜାଙ୍କୁ ଉଗରର ଏହି ସମ୍ବାଦ ପ୍ରଦାନ (୧୫ ପଦ); ବାଣାସୁରର ରଥଧ୍ୱଜ ପତନ (୧୬ ପଦ); ଅନିରୁଦ୍ଧ ଦର୍ଶନରେ ବାଣାସୁରର କୋପ (୧୭-୧୮); ବାଣାସୁର ଓ ଅନିରୁଦ୍ଧଙ୍କ ଯୁଦ୍ଧ ଓ ବାଣାସୁରର ମୋହପ୍ରାପ୍ତି (୧୯); ବାଣାସୁରର ମାୟାଯୁଦ୍ଧ (୨୦); ଅନିରୁଦ୍ଧଙ୍କ ନାଗପାଶ ବନ୍ଧନ (୨୧-୨୨ ପଦ)।

ଏକାଦଶ ଛାନ୍ଦ— ଅନିରୁଦ୍ଧଙ୍କ ନାଗପାଶ ବନ୍ଧନରେ ଉଷାଙ୍କ ଶୋକ ଓ ପୂର୍ବ ସ୍ନେହର ଅନୁଚିନ୍ତା (୧-୩୦ ପଦ); ସଖୀଙ୍କର ଆଶ୍ୱାସନା (୩୧ ୩୨ ପଦ); ଉଷାର ଚେତନା (୩୩-୩୭ ପଦ); ନାରଦଙ୍କର ଶ୍ରୀକୃଷ୍ଣଙ୍କୁ ସମ୍ବାଦ ପ୍ରଦାନ (୩୮-୪୦ ପଦ); ଯାଦବ ବୀରମାନଙ୍କର ଶୋଣିତପୁର ଆଗମନ (୪୧ ପଦ)।

ଦ୍ୱାଦଶ ଛାନ୍ଦ—ଶ୍ରୀକୃଷ୍ଣ ପ୍ରଭୃତି ଯାଦବମାନଙ୍କର ଶୋଣିତ-ପୁର ଆଗମନ ବର୍ଣ୍ଣନା (୧-୩ ପଦ), ବାଣାସୁର ସହ ଯାଦବ-ମାନଙ୍କର ଯୁଦ୍ଧ ଓ ହରିହର ଯୁଦ୍ଧ (୪ ପଦ); ବ୍ରହ୍ମାଙ୍କ ଅନୁରୋଧରେ ହରିହର ଯୁଦ୍ଧର ସମାପ୍ତି, ଶ୍ରୀକୃଷ୍ଣଙ୍କ ଦ୍ୱାରା ବାଣାସୁରର ବାହୁ ଛେଦନ (୫ ପଦ), ଶ୍ରୀକୃଷ୍ଣଙ୍କର ଉଷା ଅନିରୁଦ୍ଧ ସହ ପ୍ରତ୍ୟାବର୍ତ୍ତନ (୬ ପଦ); ଗରୁଡ଼ ଉପରେ ଶ୍ରୀକୃଷ୍ଣଙ୍କ ଗମନ (୭ ପଦ); ଶ୍ରୀକୃଷ୍ଣ, ଉଷା, ଅନିରୁଦ୍ଧଙ୍କର ବର୍ଣ୍ଣନା (୮-୯ ପଦ); ଦ୍ୱାରକାରମଣୀ-ମାନଙ୍କର ସମ୍ବର୍ଦ୍ଧନା (୧୦-୧୩ ପଦ); ଶୁଭ ଲଗ୍ନରେ ବିବାହ ଉତ୍ସବ (୧୪-୧୫ ପଦ) ।

ଏହି ବିଷୟସୂଚୀରୁ ଉଷାଭିଳାଷର ରଚନାପଦ୍ଧତିର ସ୍ଥୂଳ ପରିଚୟ ମିଳିପାରିବ ।

## ରାଧାନାଥଙ୍କ ଉଷାକାବ୍ୟ

ଏଠାରେ ସ୍ମରଣ କରିଯାଇପାରେ ଯେ କବିବର ରାଧାନାଥ, 'ଉଷା' ନାମରେ ଗୋଟିଏ କାବ୍ୟ ରଚନା କରିଅଛନ୍ତି । କିନ୍ତୁ ଏହି ଉଷାକାବ୍ୟର ବିଷୟବସ୍ତୁ ସହିତ ଉଷାଭିଳାଷର ବିଷୟବସ୍ତୁର କୌଣସି ସମ୍ପର୍କ ନାହିଁ । ରାଧାନାଥଙ୍କ କାବ୍ୟର ନାୟିକା ଉଷା ନୃହୁ ରାଜାଙ୍କ କନ୍ୟା । ସେ ପ୍ରତିଜ୍ଞା କରିଥିଲେ ଯେ ଯେଉଁ ରାଜପୁତ୍ର ଦୌଡ଼ ପ୍ରତିଯୋଗିତାରେ ତାଙ୍କୁ ହରାଇବ, ତାହାଙ୍କୁ ସେ ପତି ରୂପେ ଗ୍ରହଣ କରିବ ଓ ଯେ ହାରିଯିବ ତାର ଶିରଚ୍ଛେଦନ କରାଯିବ । ଶତ ଶତ ରାଜପୁତ୍ର ଦୌଡ଼ରେ ପରାଜିତ ହୋଇ ପ୍ରାଣ ଦେଲେ । ପରିଶେଷରେ ଜୟନ୍ତ ନାମକ ଜଣେ ରାଜପୁତ୍ର କାର୍ତ୍ତିକେୟ ପ୍ରଦତ୍ତ ତିନୋଟି ସ୍ୱର୍ଣ୍ଣପଦ୍ମ ସାହାଯ୍ୟରେ ଉଷାଙ୍କୁ ପ୍ରତିଯୋଗିତାରେ ପରାସ୍ତ

କଲେ । କିନ୍ତୁ ଉଷା ଓ ଜୟନ୍ତଙ୍କର ବିବାହ ବେଳେ ଦୁହିଁଙ୍କର ପ୍ରାଣବାୟୁ ଚାଲିଗଲା । ଏ ଦୁହେଁ ଥିଲେ ସ୍ୱର୍ଗର ଅପ୍‌ସରା ତିଳୋତ୍ତମା ଓ ବିଦ୍ୟାଧର ଚିତ୍ରରଥ । ଅଭିଶାପ ପାଇ ସେ ଦୁହେଁ ପୃଥିବୀରେ ଜନ୍ମିଥିଲେ ଓ ଏହି ବିବାହ ମିଳନରେ ସେମାନେ ଶାପମୁକ୍ତ ହେଲେ ।

ରାଧାନାଥ ଏହି କାବ୍ୟରେ ଉଷାମେଡ଼ ଫନ୍ତିତର ବର୍ଣ୍ଣନା ଦେଇ କାବ୍ୟଟିକୁ ଜୀବନ୍ତ କରିଅଛନ୍ତି ! ଦୁର୍ବାସାଙ୍କ ଅଭିଶାପରେ ଦ୍ୱାପର ଯୁଗରେ ତିଳୋତ୍ତମା ମର୍ତ୍ତ୍ୟପୁରରେ ବାଣାସୁରର କନ୍ୟା ଉଷା ରୂପରେ ଜନ୍ମିଥିବାର ମଧ୍ୟ ସେ କହିଅଛନ୍ତି । କିନ୍ତୁ ରାଧାନାଥଙ୍କ ଉଷା ପୁରାଣର ଉଷା ନୁହନ୍ତି । ତାଙ୍କର ଉଷାକାବ୍ୟ ଓଭିଡଙ୍କ ଆଟଲାଣ୍ଟା ରେସ ବିଷୟକୁ ଆଧାର କରି ରଚିତ । ତାଙ୍କର ଉଷା ଆଟଲାଣ୍ଟାର ଏକ ଉତ୍କଳୀୟ ସଂସ୍କରଣ ମାତ୍ର । ରାଧାନାଥ ତାଙ୍କ ଉଷାକୁ ଉତ୍କଳୀୟ ବେଶଭୂଷାରେ ଉପସ୍ଥାପିତ କରିଥିଲେ ହେଁ ତାର ବୈଦେଶିକତା ସ୍ପଷ୍ଟ ଜଣାପଡ଼ଯାଏ । ତେଣୁ ରାଧନାଥ ଉଷା ଓ ଶିଶୁ-ଶଙ୍କରଙ୍କର ଉଷା ଯେ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍, ତାହା ସ୍ମରଣ ରଖିବା ଉଚିତ ।

## ଉଷାଭିଳାଷ ଗୀତକାବ୍ୟର ପ୍ରାଥମିକ ଉନ୍ମେଷ

ରୀତଯୁଗର ଯେଉଁ କାବ୍ୟାବଳୀ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ଅମର ଆସନ ଅଧିକାର କରିଅଛନ୍ତି, ତାହା ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟମାନ ଯଥାର୍ଥରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛନ୍ତି ଓ ସେଥିଲାଗି ତାଙ୍କୁ କବି ସମ୍ରାଟ୍ ଆଖ୍ୟା ଦିଆଯାଇଅଛି । କିନ୍ତୁ ଉପେନ୍ଦ୍ର ଭଞ୍ଜଙ୍କୁ ରୀତିଯୁଗର ପ୍ରବର୍ତ୍ତକ ରୂପେ ଗ୍ରହଣ କରିବା

ଭ୍ରମାତ୍ମକ । ଉପେନ୍ଦ୍ରଙ୍କ ପୂର୍ବରୁ ଯେଉଁ କବିମାନେ ରୀତିକାବ୍ୟର ପରମ୍ପରା ସୃଷ୍ଟି କରିଯାଇଥିଲେ, ସେମାନଙ୍କର କୃତି ବିଶେଷ ଭାବରେ ଲୋକଲୋଚନର ଗୋଚରକୁ ଆସି ପାରିନାହିଁ । ତେଣୁ ସାଧାରଣତଃ ଏକ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଛି ଯେ ଉପେନ୍ଦ୍ର ହିଁ ରୀତିଯୁଗର ପ୍ରତିଷ୍ଠାତା । କିନ୍ତୁ ବାସ୍ତବରେ ଉପେନ୍ଦ୍ର ଏକ କାବ୍ୟ ପରମ୍ପରାର ଶ୍ରେଷ୍ଠ ଦାୟାଦ । ତାଙ୍କ ପୂର୍ବରୁ ଯେଉଁମାନେ ଏହି କାବ୍ୟସରଣୀ ପ୍ରସ୍ତୁତ କରି ଯାଇଥିଲେ, ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣଙ୍କର କୃତି ପାଠକମାନଙ୍କ ଦୃଷ୍ଟିଗୋଚରକୁ ଆସିଅଛି । ବିଶ୍ୱମ୍ଭର, ଧନଞ୍ଜୟ, ଲୋକନାଥ, ଶିଶୁଶଙ୍କର, କାର୍ତ୍ତିକ ପ୍ରଭୃତି କବିମାନଙ୍କ ବିନା ଉପେନ୍ଦ୍ରଙ୍କର ସୃଷ୍ଟି ହୋଇପାରିଥାନ୍ତା କି ନା ସେ ବିଷୟରେ ସନ୍ଦେହର ଯଥେଷ୍ଟ ଅବକାଶ ଅଛି । ଉପେନ୍ଦ୍ର ରୀତିଯୁଗର ସ୍ରଷ୍ଟା ନ ହେଲେହେଁ ସେହି ଯୁଗର ପ୍ରଧାନ ସୃଷ୍ଟି ଓ ଯଥାର୍ଥରେ କାଳ୍ପନିକ କାବ୍ୟରାଜ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ୍ । ଏହି ଧରଣର ରଚନାରେ ତାଙ୍କର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି କବି ତାଙ୍କୁ ବଳି ପାରି ନାହାନ୍ତି । ଅନେକେ ତାଙ୍କର ଅନୁକରଣ କରିଅଛନ୍ତି, କିନ୍ତୁ ତାଙ୍କର ସମକକ୍ଷ ହୋଇପାରି ନାହାନ୍ତି ।

ଯେଉଁ ପୂର୍ବସୂରିମାନେ ଉପେନ୍ଦ୍ରଙ୍କ ପାଇଁ ରୀତିକାବ୍ୟ ରଚନାର ପଥ ସୁଗମ କରି ଯାଇଥିଲେ, ସେମାନଙ୍କ ମଧ୍ୟରେ ଊଷାଭିଳାଷର ରଚୟିତା ଶିଶୁ ଶଙ୍କର ଦାସ ଯେ ଗୋଟିଏ ବିଶିଷ୍ଟ ସ୍ଥାନର ଅଧିକାରୀ ଏଥିରେ ସନ୍ଦେହ ନାହିଁ ।

## ଊଷାଭିଳାଷରେ ନାୟିକା ରୂପବର୍ଣ୍ଣନା

ସଂସ୍କୃତ କାବ୍ୟ ଭଳି ପ୍ରାଚୀନ ଓଡ଼ିଆ କାବ୍ୟମାନଙ୍କରେ ନାୟିକାକୁ ସର୍ବଶୋଭାର ଆଧାର ରୂପେ ବର୍ଣ୍ଣନା କରାଯାଇଥିବାର

ଦେଖାଯାଏ । ଶିଶୁ ଶଙ୍କର ତାଙ୍କ ଉଷାଭିଳାଷରେ ସେହିପରି ଉଷାର ରୂପବର୍ଣ୍ଣନା କରିଅଛନ୍ତି । ତାଙ୍କର ଉଷା ଅପରୂପ ସୌନ୍ଦର୍ଯ୍ୟର ଅଧିକାରିଣୀ ରୂପେ ବର୍ଣ୍ଣିତ । ତାର 'ଲପନ-ଲାବଣ୍ୟ ଲକ୍ଷ୍ମୀଙ୍କୁ ଗୃହୀଁ ଶରଦ-ସମ୍ପୂର୍ଣ୍ଣ-ଅକଳଙ୍କ ହରିଣାଙ୍କ' ମଧ୍ୟ ଆତଙ୍କିତ ହେଉଥିଲା । ତାର ହାସ ନିକଟରେ ଶଶୀ-କଳା ଲଜ୍ଜା ଅନୁଭବ କରି ଶିବଙ୍କ ଠାରେ ଆଶ୍ରୟ ଗ୍ରହଣ କରିଥିଲା । ପଦ୍ମ ତାର ଶରୀରର ସୁଗନ୍ଧ ଗ୍ରହଣ କରି ନିଜେ ସୁଗନ୍ଧ ହୋଇଥିଲା । ଉଷାର କୁଟିଳ କୁନ୍ତଳ 'କାମରଥ ଧ୍ୱଜ ମାଳ ପତାକା' ସଦୃଶ ବିରାଜମାନ କରୁଥିଲା । ତାହାର ଅଧର ବନ୍ଧୁ୍ରମରେଖା ତୁଲ୍ୟ ଶୋଭା ପାଉଥିଲା ଓ ଦନ୍ତପନ୍ତି ମୁକ୍ତାକୁ ଜିଣିଥିଲା । ତାର 'କପାଳ-ଶାରଙ୍ଗ'ରେ ଭ୍ରୂଲତା ଅନଙ୍ଗର ଗୁଣ ସ୍ୱରୂପ ହୋଇଥିଲା । କଜ୍ଜ୍ୱଳଶୋଭିତ ନେତ୍ରଯୁଗଳ ପାଖରେ ତାଟଙ୍କର ସୌନ୍ଦର୍ଯ୍ୟ ଦେଖିଲେ ମନେ ହେଉଥିଲା, ସତେ ଅବା କନ୍ଦର୍ପ ଲୋଚନ-ଶରରେ ବିଷ ଲେପନ କରି ତାକୁ ତାଟଙ୍କ-ଶାଣରେ ଘଷିଅଛି । ତାର ଗଣ୍ଡଦ୍ୱୟ କାମଦେବର ମୁକୁର ସଦୃଶ ଉଦ୍ଭାସିତ ହେଉଥିଲା । ତାର ବାହୁ-ଲତାରେ ରକ୍ତ ପାଣି-ପଲ୍ଲବ ଦେଖିଲେ ମନେ ହେଉଥିଲା 'ଶିରୀଷ ମାଳାରେ କୋକନଦ ଝୁମ୍ପା' ଖଚିତ ହୋଇଅଛି କି ? ହସ୍ତସ୍ଥିତ ମରକତ ବଳୟ ସେହି ମାଳାରେ ମଧୁକରର ପ୍ରତୀତି ଜନ୍ମାଉଥିଲା । ତାର ଉଚ୍ଚ କୁଚଦ୍ୱୟ ବୃଦ୍ଧିଲାଭ କରି ହୃଦୟଦେଶକୁ ଅଧିକାର କରିଥିଲେ । ତାର କଟିଦେଶ ସିଂହର କଟି ସଦୃଶ ଅତି କ୍ଷୀଣ ଥିଲା । ତାର ଉଦରର ତ୍ରିବଳି ଯୁବାଜନମନ ବନ୍ଧନ ନିମନ୍ତେ ରଜ୍ଜୁ ସ୍ୱରୂପ ହୋଇଥିଲା । ଉଷାର ଜାନୁ ଦ୍ୱୟ 'ବିପରୀତ କନକ-କଦଳୀ'କୁ ନିନ୍ଦା କରୁଥିଲା ଓ ପାଦସ୍ଥଳ ପଦ୍ମକୁ ଧିକ୍କାର କରୁଥିଲା । ତାର ଶରୀର ଉତ୍ତାପିତ ସୁବର୍ଣ୍ଣର ବର୍ଣ୍ଣ ଧାରଣ

କରିଥିଲା । ସ୍ପୁ ଳତଃ ସେ ଏପରି ସୁନ୍ଦରୀ ଥିଲା ଯେ ଯକ୍ଷ, ଗନ୍ଧର୍ବ ଓ କିନ୍ନରମାନଙ୍କରେ ଥିବା ଶ୍ରେଷ୍ଠ ନାୟିକାମାନେ ତାର ଦାସୀପଣକୁ ମଧ୍ୟ ଯୋଗ୍ୟ ନ ଥିଲେ ।

## ଉଷାଭିଲାଷରେ ପ୍ରକୃତିବର୍ଣ୍ଣନା

ଅନେକ ସମାଲୋଚକ ଆକ୍ଷେପ କରିଥାଆନ୍ତି ଯେ, ଆମର ପ୍ରାଚୀନ କବିମାନଙ୍କୁ ପ୍ରକୃତିର ଲାବଣ୍ୟମୟୀ ସୁଷମା ଆକୃଷ୍ଟ କରି ନ ଥିଲା; ସେମାନେ ନାୟକନାୟିକାଙ୍କର ପ୍ରେମ ବର୍ଣ୍ଣନାରେ ବସିଯାଇ ଏ ଦିଗପ୍ରତି ଦୃଷ୍ଟି ଦେଇନାହାନ୍ତି । ସ୍ୱର୍ଗୀୟ ବିଜୟଚନ୍ଦ୍ର ମଜୁମଦାର ଉପେନ୍ଦ୍ରଭଞ୍ଜଙ୍କ ବିଷୟରେ ଲେଖିଅଛନ୍ତି—"Neither the sublimity nor the beauty of the natural sights peeps through his writings." ଅର୍ଥାତ୍‌ ତାଙ୍କ ରଚନାରେ ପ୍ରାକୃତିକ ଦୃଶ୍ୟରାଜିର ମହତ୍ତ୍ୱ ବା ସୌନ୍ଦର୍ଯ୍ୟ ଲବମାତ୍ର ପରିଦୃଷ୍ଟ ହୁଏ ନାହିଁ । କିନ୍ତୁ ଯେକୌଣସି ନିରପେକ୍ଷ ପାଠକ ଉପେନ୍ଦ୍ରଙ୍କ କାବ୍ୟମାନଙ୍କରେ ନାନାସ୍ଥଳରେ ପ୍ରକୃତିର ମନୋରମ ବର୍ଣ୍ଣନା ଦେଖିପାରିବ । ମଜୁମଦାରଙ୍କର ଅଭିମତ ଏକଦେଶଦର୍ଶୀ ଓ ଅପରିସ୍ଫୁଟ୍ଟ ତାର ପରିଚୟକ । ଉପେନ୍ଦ୍ରଙ୍କ କାବ୍ୟାବଳୀର ଗଭୀର ଅନୁଶୀଳନ କରିଥିଲେ ସେ ଏପରି ମତ ଦେଇ ନ ଥାନ୍ତେ । ସେ ଯାହା ହେଉ, ଆମର ଆଲୋଚ୍ୟ କବି ଶିଶୁ ଶଙ୍କର ଉଷାଭିଲାଷରେ ପ୍ରକୃତିର ବିଚିତ୍ର ଆଲେଖ୍ୟ ଅଙ୍କନ କରି ଯାଇଅଛନ୍ତି । ତାଙ୍କର ପ୍ରକୃତି ନାୟକନାୟିକାଙ୍କର ଉଦ୍ଦୀପନ ବିଭାବ ନିମନ୍ତେ ଅଭିପ୍ରେତ । ତୃତୀୟ ଛାନ୍ଦରେ କବି ବସନ୍ତ ଋତୁର ବର୍ଣ୍ଣନା ଦେଇଅଛନ୍ତି । ତାହା ସଙ୍ଗେ ସଙ୍ଗେ ଉଷାର ଯୌବନପ୍ରାପ୍ତିର ସୂଚନା ଦେବା

ତାଙ୍କର ଉଦ୍ଦେଶ୍ୟ । ତେଣୁ ବାସନ୍ତୀ ଶୋଭାର ବଭିନ୍ନ ଅଂଶକୁ ସେ ଉଷାର ଯୌବନକାଳୀନ ଉଦ୍ଦୀପନାର ଉପାଦାନ ରୂପେ ଦର୍ଶାଇଅଛନ୍ତି । ପୁଷ୍ପ-ମକରନ୍ଦ-ଗନ୍ଧବାହୀ ମନ୍ଦ ମରୁତ ଲୋଚନ ଓ ମନକୁ କଣ୍ଟକସ୍ତ ତୁଲ୍ୟ କମ୍ପାଇଦେଲା । ମଳୟଜ ଦକ୍ଷିଣା ପବନ ସ୍ପର୍ଶରେ ତରୁଲତା କୋରକ ଧାରଣ କଲେ; ସେହି ପବନ ଚୁମ୍ବନ ଲୋଭରେ କୁଟ୍ଟଳକା ନକଟକୁ ଗଲା । ନଆଳୀଲତାର ନବୀନ ବାହୁ-ଆଳିଙ୍ଗନରେ ଚୂତତରୁ ପୁଲକତ ହୋଇ ମୁକୁଳମଞ୍ଜରୀ ପ୍ରକାଶ କଲା । କାମର କୁନ୍ତ ସଦୃଶ କେତକ କୁସୁମ ବକସିତ ହେଲା । ମଲ୍ଲୀଫୁଲ ଉପରେ ମଧୁପର ଗୁଞ୍ଜନ କନ୍ଦର୍ପର ବଜୟ-କାଳୀନ ଶଙ୍ଖଧ୍ୱନ ପରି ଶୁଣାଗଲା । ଅଶୋକପୁଷ୍ପ ବରହୀ ଅନ୍ତରରେ ଶୋକ ଜାତ କରାଇଲା । ଚନ୍ଦନ ତରୁକୁ ବେଷ୍ଟନ କରିଥିବା ଲବଙ୍ଗଲତା କଣ୍ଟକସ୍ତ ଉଙ୍ଗଣକରେ ଉନ୍ମାଦନା ପ୍ରକାଶ କଲା । ସରୋବରରେ ମରାଳମାନେ କ୍ରୀଡ଼ାରେ ମତ୍ତ ହେଲେ । ଚକ୍ରବାକ ଦମ୍ପତି ଚର୍ବଣରେ ବୁଡ଼ ଓ ଉଠି ପରସ୍ପର ପ୍ରତି ସ୍ନେହ ପ୍ରକାଶ କଲେ । କୋକିଳର ଜଡ଼ତା ଦୂର ହେବାରୁ ସେ ପଞ୍ଚମ ସ୍ୱରରେ ଗାନ କଲା । ଚନ୍ଦ୍ରମୁଖୀ ଉଷା ଏସବୁ ଦୃଶ୍ୟ ଦେଖି କାମଜ୍ୱାଳାରେ ଅଧୀର ହେଲା ।

ରଜନୀ ପ୍ରଭାତ ହେବା ପୂର୍ବରୁ ପ୍ରକୃତି କପରି ମନୋରମ ରୂପ ଧାରଣ କରିଥାଏ, ତାହା ମଧ୍ୟ ଏହି ଛନ୍ଦରେ ବର୍ଣ୍ଣିତ ହୋଇଥିବାର ଦେଖାଯାଏ ।

ନଶିଶେଷରେ ଚକ୍ରବାକୀର ଆନନ୍ଦ ଜାତ ହେଲା; ପଦ୍ମିନୀ ଈଷତ୍ ବକସିତ ହେଲା । ରଜନୀ ଚନ୍ଦ୍ରକୁ ଘେନ ଚରମ-ଗିରିକୁ ଆଶ୍ରୟ କଲା; କୁମୁଦନୀ ମୁଦ୍ରିତ ହୋଇ ଆସିଲା ଓ ଚକୋରୀ ଆକୁଳ ହେଲା । କୁକ୍କୁଟ ଡାକକୁ ଅଭିସାରିକାମାନେ ନନ୍ଦା କଲେ ।

ପ୍ରୋଷିତ-ଭର୍ତ୍ତୃକାମାନେ ପତିଙ୍କ ଆଗମନ-ଦିବସ ଜାଣିବା ପାଇଁ ରେଖା ଗଣିଲେ । ଖଣ୍ଡିତା ନାୟିକା ପତିଙ୍କ ହୃଦଦେଶରେ ସୁରତ-ସଙ୍କେତ ଦେଖି ରୋଷ ପ୍ରକାଶ କଲା । ଭ୍ରମର ଅଙ୍ଗରେ କୁମୁଦିନୀ-ଅଙ୍ଗସଙ୍ଗର ସଙ୍କେତ ଦେଖି ପଦ୍ମିନୀ ବାତବିକମ୍ପିତ ହେଲା । ଏ ସ୍ଥଳରେ କବି ଯେ ଭଟ୍ଟିକାବ୍ୟର ବର୍ଣ୍ଣନାଦ୍ୱାରା ପ୍ରଭାବିତ ହୋଇଅଛନ୍ତି, ତାହା ନିଃସନ୍ଦେହରୂପେ କୁହାଯାଇପାରେ । ଭଟ୍ଟିରେ ଅଛି—

ପ୍ରଭାତବାତାହତି କମ୍ପିତାକୃତିଃ
କୁମୁଦ୍ୱତୀ-ରେଣୁ-ପିଷଙ୍ଗବିଗ୍ରହମ୍ ।
ନିରାସ ଭୃଙ୍ଗମ୍ କୁପିତେବ ପଦ୍ମିନୀ
ନ ମାନିନୀ ସଂସହତେଽନ୍ୟସଙ୍ଗମମ୍ ॥

ଶିଶୁ ଶଙ୍କର ଠିକ୍ ସେହିପରି କହିଅଛନ୍ତି—

"ପଦ୍ମିନୀ କମ୍ପଇ ବାତେ ଭ୍ରମର ଗୃହ୍ଣି
କୁମୁଦିନୀ ସଙ୍ଗେ କି ଏ ପ୍ରକୋପ ସେ ହୋଇ ।"

ଉତ୍କଳୀୟ ସଂସ୍କୃତକବି ଜୟଦେବ ତାଙ୍କ ଗୀତଗୋବିନ୍ଦରେ ସରଳ ଓ ହୃଦୟସ୍ପର୍ଶୀ ଭାଷାରେ ବସନ୍ତର ବର୍ଣ୍ଣନା କରିଅଛନ୍ତି । ତାଙ୍କର ବନଲକ୍ଷ୍ମୀ ଯେପରି ସରସ ଲଳିତ ଭାଷାରେ ବର୍ଣ୍ଣିତ, ଶିଶୁ ଶଙ୍କରଙ୍କର ଉପବନ ମଧ୍ୟ ସେହିପରି ବର୍ଣ୍ଣିତ । ଜୟଦେବ କହିଅଛନ୍ତି—

ବିରହିନିକୃନ୍ତନ କୁନ୍ତମୁଖାକୃତି କେତକ ଦନ୍ତୁରିତାଶେ ।

ଶିଶୁଶଙ୍କର ଏହାର ଅନୁକରଣରେ ଲେଖିଅଛନ୍ତି—

"ଯେବଣ କେତକି ନାମ ମାତ୍ରକେ ମୋହି
କାମ-କୁନ୍ତ ମତ କେ ତା ଦେଖି ପାରୁ ସହି ॥"

ଚତୁର୍ଥ ଛାନ୍ଦରେ କବି ଗ୍ରୀଷ୍ମର ବର୍ଣ୍ଣନା କରି କହିଅଛନ୍ତି—

ଗ୍ରୀଷ୍ମ ଋତୁର ଆଗମନ ହେବାରୁ ଝିଙ୍କାଙ୍କ ଶବ୍ଦ ସହ ଝଞ୍ଜା ପବନ ବହିଲା । ପ୍ରଚଣ୍ଡ ସୂର୍ଯ୍ୟ କିରଣ ଆକାଶକୁ ବ୍ୟାପିଗଲା । ବନର ଜନ୍ତୁମାନେ ବାମ୍ବର କୁଞ୍ଜରେ ଲୁଚିଲେ । ଯୁବତୀମାନେ କୁଚରେ ଚନ୍ଦନ ଲେପନ କଲେ । ସୂର୍ଯ୍ୟ ଆକାଶରେ ରହି ପୃଥିବୀର ଜଳ ଶୋଷଣ କଲା ପରି କନ୍ଦର୍ପ ଅଦୃଶ୍ୟ ରହି ବିରହୀ ହୃଦୟକୁ ଦଗ୍ଧ କଲା । ରଜନୀ ଲୋକମାନଙ୍କୁ ସୁଖକର ବୋଧହେଲା । ପର୍ବତ-ଶିଖରମାନଙ୍କରେ ବିରହୀ-ହୃଦୟ-ଦହନକାରୀ କାମାନଳ ସଦୃଶ ଦାବାନଳ ଦେଖା ଦେଲା ।

ଏହି ବର୍ଣ୍ଣନାରେ ମଧ୍ୟ କବି ପ୍ରକୃତି ସହିତ ମାନବହୃଦୟର ସାମଞ୍ଜସ୍ୟ ପ୍ରଦର୍ଶନରେ ତ୍ରୁଟି କରି ନାହାନ୍ତି ।

ଦଶମ ଛାନ୍ଦରେ ବର୍ଷା ଓ ଶରତ୍ ଏହି ଦୁଇଟି ଋତୁର ବର୍ଣ୍ଣନା ଅଛି । ପ୍ରେମିକାର ପ୍ରୀତି ସମ୍ପାଦନ ପାଇଁ ପ୍ରେମିକ କିପରି ତତ୍ପର, ତାହା ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ସାହାଯ୍ୟରେ ବିଶଦ କରାଯାଇଅଛି ।

ବର୍ଷାର ଆଗମନ ହେଲା । ମେଘକୋଳରେ ବିଦ୍ୟୁତ୍ କ୍ରୀଡ଼ା କଲା, ମୟୂରମୟୂରୀ ମତ୍ତ ହୋଇ ନୃତ୍ୟ କଲେ, ମଣ୍ଡୁକ ଓ ଡାହୁକର ରାବ ଶୁଣାଗଲା । ବିଦେଶୀମାନେ ସ୍ୱଗୃହକୁ ଫେରିଆସିଲେ । ଚାତକ-ମାନେ ବର୍ଷାଜଳ ପାନ କରି ତୃପ୍ତ ହେଲେ । ଘୋର ବର୍ଷାରେ ଦିଗସବୁ ଅଦୃଶ୍ୟ ହେଲା । ଚନ୍ଦ୍ରକୁ ଦେଖି ନ ପାରି ଚକୋରୀ ବିଷାଦରେ ମଗ୍ନ ହେଲା । ମେଘ ଅନ୍ଧାରରେ ଦିବସ ଓ ରାତ୍ରିର ପ୍ରଭେଦ ଜଣାଗଲା ନାହିଁ । କଦମ୍ବପୁଷ୍ପ ବିକଶିତ ହେଲା । ଲୋଧ୍ର, କୁଟଜ ଓ ମଲ୍ଲୀ ପ୍ରଭୃତି ଫୁଲ ଫୁଟିବାରୁ ଭ୍ରମରମାନେ ଆନନ୍ଦିତ ହେଲେ । କୋକିଳ ମୌନବ୍ରତ ଧାରଣ କଲା ।

ସେହିପରି ଶରତ୍ ବର୍ଣ୍ଣନାରେ କବି କହିଅଛନ୍ତି—

ମାନିନୀ ନାୟିକା ମାନ ତ୍ୟାଗ କଲେ ତାର ମୁଖ ପ୍ରସନ୍ନ ହେଲା ପରି ଶରତ୍‌ର ଆଗମନରେ ନଦୀର ଜଳ ନିର୍ମଳ ହେଲା । ବିପଦରୁ ମୁକ୍ତ ସାଧୁଜନ ପରି ମେଘମୁକ୍ତ ସୂର୍ଯ୍ୟ ଓ ଚନ୍ଦ୍ର ଉଜ୍ଜ୍ୱଳ ଦେଖାଗଲେ । ବିମଳ ଚନ୍ଦ୍ର ଦର୍ଶନରେ କୁମୁଦିନୀ ବିକସିତ ହେଲା । ହଂସମାନେ ମାନସରୋବରରୁ ଫେରି ଆସିଲେ ।

ଏହି ଋତୁବର୍ଣ୍ଣନା ଅନିରୁଦ୍ଧଙ୍କର ଉଷାଙ୍କ ପ୍ରତି ଗୂଢ଼ାସକ୍ତି ପ୍ରସଙ୍ଗରେ ଦିଆଯାଇଅଛି । ପ୍ରେମିକାକୁ ଅନୁରାଗିଣୀ କରାଇବା ପାଇଁ ଏହିସବୁ ପ୍ରାକୃତିକ ଦୃଶ୍ୟକୁ ଅବଲମ୍ବନ ରୂପେ ଗ୍ରହଣ କରାଯାଇଅଛି ମାତ୍ର । ଅନିରୁଦ୍ଧ କୁସୁମିତ କଦମ୍ବର ଶୋଭାରେ ଉଷାଙ୍କର ଗଣ୍ଡଆଭା ଦେଖିଅଛନ୍ତି; ଗଜ ଉଷାଙ୍କ ମୁଖବାସ ନ ଜାଣି ଭୂମିଗନ୍ଧ ଆଘ୍ରାଣ କରୁଥିବାରୁ ତାକୁ ମୂର୍ଖ ବୋଲି କହିଅଛନ୍ତି ।

ମୋଟ ଉପରେ କୁହାଯାଇ ପାରେ ଯେ ସଂସ୍କୃତ କବିମାନେ ପ୍ରକୃତିବର୍ଣ୍ଣନାରେ ଯେଉଁଭଳି ଚାତୁରୀ ଦେଖାଇ ଯାଇଅଛନ୍ତି, ଶିଶୁଶଙ୍କର ତହିଁରୁ ଊଣା ଦେଖା'ଇ ନାହାନ୍ତି ।

## ଉଷାଭିଲାଷର ସମାଜଚିତ୍ର

ଏହି କାବ୍ୟରେ ଯେଉଁ ସମାଜର ଚିତ୍ରଣ ହୋଇଅଛି, ତାହା ଜନସାଧାରଣଙ୍କ ସମାଜର ନୁହେଁ । ଜନତାର ସୁଖଦୁଃଖ, ହସକାନ୍ଦ ଏଥିରେ ନାହିଁ । ଏଥିରେ ଅଛି, ତତ୍କାଳୀନ ସମାଜର ଉଚ୍ଚତମ ସ୍ତରର ଅର୍ଥାତ୍ ରାଜାରାଜୁଡ଼ାଙ୍କ ସମାଜର ଚିତ୍ର । ତାହା ସଙ୍ଗେ ଦେବତା ଓ ଋଷିମାନେ ମଧ୍ୟ ସ୍ଥଳବିଶେଷରେ କାବ୍ୟରେ ଆତ୍ମପ୍ରକାଶ କରିଅଛନ୍ତି । ତେଣୁ ଆମେ ଏହି କାବ୍ୟରେ କେବଳ ଧନିକ ସମ୍ଭ୍ରାନ୍ତ ସମାଜର ଚିତ୍ର ଦେଖିବାକୁ ପାଉଁ ।

ନାୟିକା ଊଷାର ପିତା ବାଣାସୁରର ରାଜଧାନୀ ଶୋଣିତ-ପୁର ବର୍ଣ୍ଣନାରୁ ଜଣାଯାଏ ଯେ ରାଜାମାନେ ସେ କାଳରେ 'ଦୁର୍ଜ୍ଜୟ କଣ୍ଟକ' ନିର୍ମାଣ କରି ସେଥିରେ ବାସ କରୁଥିଲେ । ନଗରକୁ ସୁଦୃଶ୍ୟ କରିବା ନିମନ୍ତେ ଯଥେଷ୍ଟ ଯତ୍ନ କରାଯାଉଥିଲା । ରାଜାମାନେ କେବଳ ବିଳାସ ବ୍ୟସନରେ ମଜ୍ଜି ରହି ନ ଥିଲେ । ସେମାନଙ୍କର ବଳ ବିକ୍ରମ ଥିଲା । ଯୁଦ୍ଧକ୍ଷେତ୍ରରେ ସେମାନେ ଅସୀମ ବୀରତ୍ୱ ପ୍ରକାଶ କରୁଥିଲେ । ଏହାର ସୂଚନା ବାଣାସୁର ଓ କୃଷ୍ଣଙ୍କ ଚରିତ୍ରରୁ ମିଳେ । ଅମାନୁଷିକ ଦୈବୀ ଶକ୍ତି ଲାଭ କରିବା ଆଶାରେ କେହି କେହି କଠୋର ତପସ୍ୟା କରୁଥିଲେ । ରାଜାମାନେ ଯୁଦ୍ଧକ୍ଷେତ୍ରରେ ରଥ, ଧନୁଶର ଓ ବିବିଧ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ ।

ଉଚ୍ଚବଂଶୀୟ କନ୍ୟାମାନଙ୍କୁ ଯୌବନପ୍ରାପ୍ତି ପରେ କଠୋର ଅବରୋଧ ମଧ୍ୟରେ ରଖାଯାଉଥିଲା । କେବଳ ସହଚରୀ ଓ ଦାସୀ-ମାନଙ୍କ ବ୍ୟତୀତ ସେଠାକୁ କୌଣସି ପୁରୁଷର ପ୍ରବେଶ ନିଷିଦ୍ଧ ଥିଲା । ସହଚରୀମାନଙ୍କ ମଧ୍ୟରୁ କେହି କେହି ଚିତ୍ରଲେଖା ପରି ଚିତ୍ରବିଦ୍ୟାରେ ନିପୁଣ ଥିଲେ । ଯୁବତୀ କନ୍ୟାମାନଙ୍କୁ ପୁରୁଷମାନଙ୍କ ଠାରୁ ଦୂରରେ ରଖାଯାଉଥିଲେ ହେଁ ସେମାନେ ଅନ୍ୟ ସୁଖସ୍ୱାଚ୍ଛନ୍ଦ୍ୟ ଭୋଗ କରୁଥିଲେ । ନୃତ୍ୟ, ଗୀତ, ବାଦ୍ୟ, କାବ୍ୟାଲୋଚନା ପ୍ରଭୃତିରେ ସେମାନଙ୍କର ସମସ୍ତ ଅବସର ଅତିବାହିତ ହୋଇଥିଲା । ସେମାନଙ୍କ ଚିତ୍ତବିନୋଦନ ନିମନ୍ତେ ସରୋବର ସମନ୍ୱିତ ବିବିଧ ଫଳପୁଷ୍ପ ଶୋଭିତ ଉପବନମାନ ନିର୍ମିତ ହେଉଥିଲା ।

ନାୟକ ଅନିରୁଦ୍ଧ ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କର ପୌତ୍ର । ଦ୍ୱାରକାର ବର୍ଣ୍ଣନାରୁ ମଧ୍ୟ ସେହି ରାଜ୍‌ଡ଼ା ସମାଜର ଚିତ୍ର ମିଳେ । ଶ୍ରୀକୃଷ୍ଣଙ୍କର ଷୋଳସହସ୍ର ଏକଶତ ଅଷ୍ଟ ମହିଷୀ ଥିଲେ । ଏଥିରୁ ସୂଚିତ ହୁଏ ଯେ ସେ କାଳରେ ବହୁପତ୍ନୀ ଗ୍ରହଣ ପ୍ରଥା ନିନ୍ଦନୀୟ ନ ଥିଲା ।

ସେ ସମୟରେ କଠୋର ଜାତିପ୍ରଥା ନ ଥିଲ ବୋଲି ଅନୁମିତ ହୁଏ । ଶ୍ରୀକୃଷ୍ଣ ଆର୍ଯ୍ୟ ହୋଇଥିଲେ ହେଁ ଅସୁରରାଜକନ୍ୟା ଉଷା ସହିତ ନିଜର ପୌତ୍ର ଅନିରୁଦ୍ଧଙ୍କର ବିବାହ ଦେବାରେ ଲବମାତ୍ର କୁଣ୍ଠା ପ୍ରକାଶ କରିନାହାନ୍ତି ।

ଯୁଦ୍ଧକ୍ଷେତ୍ରରେ ଚାରି ଶ୍ରେଣୀର ସୈନ୍ୟ ଯୁଦ୍ଧ କରୁଥିଲେ; ଯଥା—ରଥୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ । ରାଜାମାନେ ନିଜେ ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ଗୌରବର ବିଷୟ ମନେ କରୁଥିଲେ । ଦ୍ୱାରକାର ରାଜା ଶ୍ରୀକୃଷ୍ଣ ଓ ବାଣାସୁର ପ୍ରତ୍ୟକ୍ଷ ସଂଗ୍ରାମ କରିଥିଲେ ବୋଲି ଉଷାଭିଳାଷରେ ବର୍ଣ୍ଣିତ ।

ବ୍ରାହ୍ମଣମାନେ ରାଜାଙ୍କର ମଙ୍ଗଳପାଠ କରୁଥିଲେ ଓ ଭାଟମାନେ ରାଜାଙ୍କର ପ୍ରଶସ୍ତି ଗାନ କରୁଥିଲେ । ରାଜା ବିଜେ କଲାବେଳେ ଶ୍ୱେତ ଛତ୍ର ଓ ବିବିଧ ବାଦ୍ୟ ବ୍ୟବହୃତ ହେଉଥିଲା । ନବ ବରବଧୂଙ୍କୁ ଦୂର୍ବା, ଅକ୍ଷତ, ଚନ୍ଦନ, ଦଧି ପ୍ରଭୃତି ଦେଇ ବନ୍ଦନା କରାଯାଉଥିଲା । ରମଣୀମାନେ ହୁଳହୁଳି ଦେଉଥିଲେ । ବିବାହାଦି କର୍ମ ନିମନ୍ତେ ଶୁଭଲଗ୍ନ ନିର୍ଦ୍ଧାରଣ କରାଯାଉଥିଲା । ସ୍ଥଳବିଶେଷରେ ଗାନ୍ଧର୍ବ ବିବାହ ହେଉଥିଲେହେଁ ସମାଜରେ ତାହାର ଆଦର ନ ଥିଲା । ତେଣୁ ଗାନ୍ଧର୍ବ ବିବାହ ପରେ ଉଷା ଓ ଅନିରୁଦ୍ଧଙ୍କର ବିଧିବଦ୍ଧ ବିବାହ ହୋଇଅଛି ।

## ଚରିତ୍ରଚିତ୍ରଣ

ଉଷାଭିଳାଷରେ ଆମ୍ଭେମାନେ ପାଞ୍ଚୋଟି ମୁଖ୍ୟ ଚରିତ୍ର ଦେଖିବାକୁ ପାଉ । ସେମାନେ ହେଲେ ଉଷା, ଚିତ୍ରଲେଖା, ବାଣ, ଅନିରୁଦ୍ଧ ଓ ଶ୍ରୀକୃଷ୍ଣ ।

**ଉଷା**—ଏହି କାବ୍ୟରେ ଉଷା ହେଉଛି ନାୟିକା । ସେ ପ୍ରବଳ ପ୍ରତାପଶାଳୀ ବାଣାସୁରର କନ୍ୟା । ରାଜକୁମାରୀ ହୋଇଥିବାରୁ ତାର ଜୀବନ ଯେ ବିଳାସବ୍ୟସନରେ ଅତିବାହିତ ହୋଇଥିବ ତାହା ସହଜେ ଅନୁମେୟ । କବି ଉଷାର ଯେଉଁ ରୂପ ବର୍ଣ୍ଣନା ଦେଇ-ଅଛନ୍ତି, ସେଥିରୁ ଜଣାଯାଏ ଯେ ସେ ଅନନ୍ୟସୁନ୍ଦରୀ ଥିଲା । ସୌନ୍ଦର୍ଯ୍ୟରେ ତ୍ରିପୁରରେ କେହି ତାର ସମକକ୍ଷ ନ ଥିଲେ । ଯକ୍ଷ ଗନ୍ଧର୍ବ ରମଣୀମାନେ ମଧ୍ୟ ସୁନ୍ଦରପଣରେ ତାର ଦାସୀତୁଲ୍ୟ ବୋଧ ହେଉଥିଲେ ।

ଯୌବନରେ ପଦାର୍ପଣ କରିବାରୁ ଉଷାକୁ ତାର ପିତା ଗୋଟିଏ ପୁରମଧ୍ୟରେ ରଖାଇଲେ । ସେଠାରେ ସହଚରୀ ଓ ଦାସୀ-ମାନେ ସତତ ତାର ସୁଖବିଧାନରେ ରତ ଥିଲେ । କୌଣସି ପୁରୁଷ ସେଠାରେ ପ୍ରବେଶ କରିବା ନିଷିଦ୍ଧ ଥିଲା । ଗୀତ, ବାଦ୍ୟ, ନୃତ୍ୟ ଓ କାବ୍ୟାଲୋଚନାରେ ଉଷା ସଖୀମାନଙ୍କ ସହ କାଳଯାପନ କରୁଥିଲା ।

ଏକଦା ବସନ୍ତକାଳରେ ଉପବନରେ ବିହାର କଲାବେଳେ ପ୍ରକୃତିରାଜ୍ୟରେ ପ୍ରେମ-ମିଳନର ଦୃଶ୍ୟାବଳୀ ସେ ଦେଖିଲା । ତେଣୁ ତାର ହୃଦୟରେ ମଧ୍ୟ ପୁରୁଷ ସଙ୍ଗେ ମିଳନର ଇଚ୍ଛା ଜାଗ୍ରତ ହେଲା । ତାହାର ଶରୀରରେ ସାତ୍ତ୍ୱିକ ବିକାର ପ୍ରକାଶ ପାଇଲା । ନିରନ୍ତର ଚିନ୍ତାରେ ତାର ଶରୀର କ୍ଷୀଣ ହୋଇଗଲା ।

ତଦନନ୍ତର ଗ୍ରୀଷ୍ମଋତୁ ଉପସ୍ଥିତ ହେଲା । କାମପୀଡ଼ାରେ ଜର୍ଜରିତା ହୋଇ ଦିନେ ଉଷା ଉପବନସ୍ଥ ସରୋବରକୁ ଗଲା । ସେଠାରେ ଶିବ ଓ ଉମା ଜଳକେଳି କରୁଥିଲେ । ଉମା ଉଷାର ମନୋବେଦନା ଜାଣିପାରି କହିଲେ—

"ବଲ୍ଲଭ ପାଇବୁ ଯାହା ଦେଖିବୁ ସ୍ୱପ୍ନେ
ବଇଶାଖ ଶୁକ୍ଳ ତ୍ରୟୋଦଶୀର ଦିନେ ॥"

ଉକ୍ତ ନିର୍ଦ୍ଦିଷ୍ଟ ଦିନ ରାତିରେ ଉଷା ସହିତ ଅନିରୁଦ୍ଧଙ୍କର ମିଳନ ହେଲା । ଏହିଠାରୁ ଆମେ ଉଷାକୁ ଏକ ଆଦର୍ଶ ପ୍ରେମିକାରୂପେ ଦେଖିବାକୁ ପାଉଁ । ସ୍ୱପ୍ନଭଙ୍ଗ ପରେ ଅନିରୁଦ୍ଧଙ୍କୁ ନ ଦେଖି ସେ ଯେଉଁ କରୁଣ ବିଳାପ କରିଛି, ତାହା ତାର ପ୍ରଗାଢ଼ ପ୍ରୀତିର ପରିଚୟ ଦିଏ । ଉଷା ତାର ପ୍ରିୟସଖୀ ଚିତ୍ରଲେଖା ଆଗରେ ସ୍ୱପ୍ନବୃତ୍ତାନ୍ତ ପ୍ରକାଶ କଲା । ଚିତ୍ରଲେଖା ତିନିପୁରର ଚିତ୍ରପଟ ଦେଖାଇବାରୁ ଉଷା ତହିଁରୁ ଅନିରୁଦ୍ଧଙ୍କୁ ଚହ୍ନାଇଦେଲା । ଚିତ୍ରଲେଖା ଯୋଗିନୀ ବିଦ୍ୟାବଳରେ ଦ୍ୱାରକାରୁ ଅନିରୁଦ୍ଧଙ୍କୁ ଅଣାଇଲେ । ଗାନ୍ଧର୍ବ ରୀତିରେ ଉଷା ଓ ଅନିରୁଦ୍ଧଙ୍କର ପରିଣୟ ହେଲା ଓ ଦୁହେଁ ଉଷାମେଢ଼ରେ ରହି ଦାମ୍ପତ୍ୟ ସୁଖ ଉପଭୋଗ କଲେ ।

କିନ୍ତୁ ଉଷାର ଏହି ସୁଖସମ୍ଭୋଗ ବେଶୀ ଦିନ ରହିଲା ନାହିଁ । ତାର ଶରୀରରେ ସୁରତିସଙ୍କେତ ଦେଖି ପ୍ରହରୀ ବାଣାସୁରକୁ ତାହା ଜଣାଇଲା । ବାଣାସୁର ନିଜ କନ୍ୟାର ଏ ପ୍ରକାର ଚରିତ୍ର-ସ୍ଖଳନ ସମ୍ବାଦରେ କ୍ରୁଦ୍ଧ ହୋଇ ଉଷାପୁରରେ ଉପସ୍ଥିତ ହେଲା ଓ ଅନିରୁଦ୍ଧଙ୍କୁ ଆକ୍ରମଣ କଲା । ଦୁହିଁଙ୍କର ଯୁଦ୍ଧରେ ପ୍ରଥମେ ବାଣାସୁର ରଥରେ ମୋହ ହୋଇ ପଡ଼ିଲା । ପରେ ମନ୍ତ୍ରୀର ପରାମର୍ଶରେ ମାୟାଯୁଦ୍ଧ କରି ଅନିରୁଦ୍ଧଙ୍କୁ ନାଗପାଶରେ ବନ୍ଧନ କଲା ।

ପ୍ରାଣପ୍ରିୟ ପତିଙ୍କର ଏ ଦୁର୍ଦ୍ଦଶା ଦେଖି ଉଷା ଅଚେତନ ହୋଇ ଭୂମିରେ ପଡ଼ିଗଲା । ଚେତନା ପାଇଲା ପରେ ସେ ବିକଳସ୍ୱରରେ ବିଳାପ କରିବାକୁ ଲାଗିଲା । ପତିଙ୍କର ଦୁର୍ଦ୍ଦଶା ଲାଗି ଉଷା ନିଜକୁ ହିଁ ଦୋଷୀ ମନେ କରିଛି । ସଖୀ ତାକୁ ଆଶ୍ୱାସନା ଦେଇଛି ଯେ ଶ୍ରୀକୃଷ୍ଣ ଶୀଘ୍ର ଆସି ଅନିରୁଦ୍ଧଙ୍କୁ ମୁକ୍ତ କରିବେ ।

ଶ୍ରୀକୃଷ୍ଣ ଯାଦବବଳ ସହିତ ଶୋଣିତପୁରକୁ ଆସି ଅନିରୁଦ୍ଧଙ୍କୁ ମୁକ୍ତ କରିଅଛନ୍ତି । ଯୁଦ୍ଧରେ ବାଣାସୁର ପରାସ୍ତ ହୋଇଅଛି । ଉଷା ଓ ଅନିରୁଦ୍ଧଙ୍କୁ ଶ୍ରୀକୃଷ୍ଣ ଦ୍ୱାରକାକୁ ଆଣି ଯଥାବିଧି ବିବାହ କ୍ରିୟା ସମ୍ପାଦନ କରାଇଅଛନ୍ତି ।

ଉଷା ପତିଭକ୍ତି ଓ ଆଦର୍ଶ ପ୍ରେମର ଜୀବନ୍ତ ପ୍ରତିମୂର୍ତ୍ତି ରୂପେ କାବ୍ୟରେ ବର୍ଣ୍ଣିତ ।

**ଚିତ୍ରଲେଖା**—ବାଣାସୁରର ମନ୍ତ୍ରୀ କୁଷ୍ମାଣ୍ଡ ଓ ତାର କନ୍ୟା ହେଉଛି ଚିତ୍ରଲେଖା । ଉଷାଭିଳାଷ କାବ୍ୟରେ ଚିତ୍ରଲେଖା ଚରିତ୍ରଟି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଅଛି । ସେ ରାଜକନ୍ୟା ଉଷାର ବିଶ୍ୱସ୍ତ ସହଚରୀ ଓ ଉଷାର ଅଭିଳାଷ ପୂରଣ ନିମନ୍ତେ ସର୍ବଦା ସାହାଯ୍ୟ କରିଆସିଅଛି । ଏହି ଚରିତ୍ରଟି ବିନା କାବ୍ୟଟିର ଅସ୍ତିତ୍ୱ ସମ୍ଭବପର ହୋଇ ନ ଥାନ୍ତା, କିମ୍ବା କଥାବସ୍ତୁ ସମ୍ପୂର୍ଣ୍ଣ ଭିନ୍ନ ଆକାର ଧାରଣ କରିଥାନ୍ତା ।

ଚିତ୍ରଲେଖା ଉଷାର ସହଚରୀ ଭାବରେ ପ୍ରଥମରୁ ଆମକୁ ଦେଖାଦିଏ । ସେ ଅନ୍ୟମାନଙ୍କ ସହ ଗୀତବାଦ୍ୟନୃତ୍ୟରେ ଯୋଗ ଦେଇଅଛି । ଅଧିକନ୍ତୁ ସେ ଚିତ୍ରବିଦ୍ୟାରେ ନିପୁଣା ଓ ଯୋଗିନୀ ବିଦ୍ୟାବଳରେ ଅସାଧ୍ୟ ସାଧନ କରିପାରେ । ଉଷାର ମନୋବେଦନାର କାରଣ ଜାଣିଲା ପରେ ସେ ତାହା ଦୂର କରିବା ପାଇଁ ଜୀବନ ପଣ କରିଛି । ସ୍ୱପ୍ନଦୃଷ୍ଟ ପୁରୁଷର ପରିଚୟ ପାଇବା ପାଇଁ ସେ ତ୍ରିଭୁବନର ଚିତ୍ରପଟ ପ୍ରସ୍ତୁତ କରି ଉଷାକୁ ଦେଖାଇଛି । ଉଷା ଚିତ୍ରପଟରେ ଅନିରୁଦ୍ଧଙ୍କୁ ଦେଖିବା ପରେ ସେ ତାଙ୍କୁ ଆଣିବା ପାଇଁ ନିଜ ଯୋଗିନୀ ବିଦ୍ୟାବଳରେ ଗଗନମାର୍ଗରେ ଦ୍ୱାରକା ଅଭିମୁଖରେ ଯାଇଛି । କିନ୍ତୁ ସେହି ବିଦ୍ୟାରେ ସମୁଦ୍ର

ପାର ହୋଇ ନ ପାର ନାରଦଙ୍କ ଠାରୁ ମନ୍ତ୍ରସାର ଶିକ୍ଷା କରିଅଛି ଓ ଅନିରୁଦ୍ଧଙ୍କୁ ପଲଙ୍କ ସହ ଆଣି ଉଷାପୁରରେ ପହଞ୍ଚାଇଅଛି । ଏହାପରି ଚିତ୍ରଲେଖା ଉଷା ଓ ଅନିରୁଦ୍ଧଙ୍କର ମିଳନ ଘଟାଇଛି । ଦୁହିଙ୍କର ଗାନ୍ଧର୍ବମତରେ ବିବାହ ହେଲା ପରେ ସେ ନିଜକୁ ଦୂରରେ ରଖିଛି ।

"ତାଙ୍କ ବିଶ୍ୱବଧୂ ଯହୁଁ ସରିଲା
ତାହା ଦେଖି ସଖୀ ଅପସରିଲା ।"

କର୍ତ୍ତବ୍ୟ ସମ୍ପାଦନ ପରେ ସେ ଦମ୍ପତିଙ୍କର ପାଖରେ ରହିବା ଆବଶ୍ୟକ ମନେ କରିନାହିଁ ।

ପ୍ରଥମରାତ୍ରି ପ୍ରଭାତରେ ଉଷା ଚିତ୍ରଲେଖାକୁ ଡାକି ଦ୍ୱାରଦେଶରେ ପ୍ରହରୀରୂପେ ରଖାଇଛି । କାଳେ କେହି ପୁରମଧ୍ୟରେ ଅନିରୁଦ୍ଧଙ୍କର ଅବସ୍ଥାନ ଜାଣି ପ୍ରକାଶ କରିଦେବ, ସେଥିପାଇଁ ଦ୍ୱାର ଜଗିବା କାର୍ଯ୍ୟ ଜଣେ ବିଶ୍ୱାସୀ ଦାସୀ ହାତରେ ରହିବା ଉଚିତ । ଉଷା ଏହି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ଚିତ୍ରଲେଖାକୁ ହିଁ ନିଯୁକ୍ତ କରିଛି । ଅନିରୁଦ୍ଧ ନାଗପାଶ ବନ୍ଧନରେ ପଡିବାରୁ ଉଷା ଅଚେତନ ହୋଇପଡ଼ିଛି । ଏହି ଚିତ୍ରଲେଖା ହିଁ ତାର ମୁହଁରେ ଜଳ ସିଞ୍ଚି ତାକୁ ସଚେତ କରାଇଅଛି । ପୁଣି ଯେତେବେଳେ ଉଷା ପତିଗୁଣ ବାହୁନି ବାହୁନି ମୋହ ଯାଇଛି, ସେତେବେଳେ "ଜଳ ସିଞ୍ଚି ସଖୀ ତାର ଧରିଲା କୋଳେ ।" ପୁଣି ସେ ଆଶ୍ୱାସନା ଦେଇ କହିଛି—

"ମୋହ ଯାଉଛନ୍ତି ନାଥ ଜାଣିବେ ପୁଣି
ଏଥକୁ ଆସିବେ ଆଜ ଶାରଙ୍ଗପାଣି ।"

ଏହାପରି ଦେଖିବାକୁ ଗଲେ ଚିତ୍ରଲେଖା କାୟା ସଙ୍ଗେ ଛାୟା ପରି ଉଷାର ପାଖେ ପାଖେ ରହି ତାର ସୁଖରେ ସୁଖ ଓ ଦୁଃଖରେ ଦୁଃଖ ଅନୁଭବ କରିଛି । ଚିତ୍ରଲେଖା ବିନା ଅନିରୁଦ୍ଧ

ଓ ଉଷାଙ୍କର ମିଳନ ଘଟିପାରି ନ ଥାନ୍ତା । ଉଷାର ସମସ୍ତ ବିପଦରେ ଚିତ୍ରଲେଖା ସହାୟ ହୋଇ ଯଥାର୍ଥ ସହଚରୀର କାର୍ଯ୍ୟ କରିଅଛି । ସମଗ୍ର କାବ୍ୟରେ ସେ ନିଜର ସ୍ୱାର୍ଥ ପାଇଁ କିଛି କରିଥିବାର ଦେଖାଯାଏ ନାହିଁ । ଉଷାର ପ୍ରିୟ କାର୍ଯ୍ୟ ସାଧନରେ ତାର ଜୀବନ ଉତ୍ସର୍ଗୀକୃତ ।

କିଶୋର ଚନ୍ଦ୍ରାନନ୍ଦ ଚମ୍ପୂର ଲଳିତା ଯେପରି, ଉଷାଭିଳାଷର ଚିତ୍ରଲେଖା ସେହିପରି ଭୂମିକା ଗ୍ରହଣ କରିଅଛି ।

**ବାଣାସୁର**— ବିଷ୍ଣୁଭକ୍ତ ପ୍ରହ୍ଲାଦଙ୍କର ପୁତ୍ର ବୈରୋଚନ, ତାଙ୍କର ପୁତ୍ର ବଳି ଓ ବଳିଙ୍କର ପୁତ୍ର ବାଣ । ଏହି ବାଣ ଜଣେ ଅସୁରରାଜ ରୂପେ ବର୍ଣ୍ଣିତ । ଅସୁର ଶବ୍ଦ ଶୁଣିଲାମାତ୍ରେ ଆମ ମନରେ ଏକ ଭୀଷଣ, କଦାକାର, ନରରକ୍ତପିପାସୁ, ଧର୍ମାଧର୍ମଜ୍ଞାନହୀନ ବର୍ବର ଚିତ୍ର ଜାଗିଉଠେ । ତେଣୁ ଅସୁରମାନେ ଆମର ଘୃଣ୍ୟ ବିବେଚିତ ହୋଇଥାନ୍ତି । କିନ୍ତୁ ଅସୁରର ଏପରି କଳ୍ପନା କରିବା ଅନୁଚିତ । ଅସୁରମାନେ ଏକ ସୁସଭ୍ୟ ଜାତି; ଏମାନଙ୍କର ଓ ଦେବତାମାନଙ୍କର ଉତ୍ପତ୍ତି ଏକ ବଂଶରୁ ହୋଇଛି ବୋଲି କୁହାଯାଏ । କେତେକ ଅସୁରଙ୍କର ମହନୀୟ କାର୍ଯ୍ୟକଳାପ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି । ମୟ ଅସୁର ଶିଳ୍ପବିଦ୍ୟାରେ ଅଦ୍ୱିତୀୟ ଥିଲା । ଅସୁରମାନଙ୍କର ଗୁରୁ ଶୁକ୍ରାଚାର୍ଯ୍ୟ ଦେବତାମାନଙ୍କର ମଧ୍ୟ ପୂଜନୀୟ ଥିଲେ । କେତେ ସୁସଭ୍ୟ ଆର୍ଯ୍ୟ ଅସୁରମାନଙ୍କ ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରିଥିଲେ । ଅସୁରରାଜ ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠାଙ୍କୁ ରାଜା ଯଯାତି ଗ୍ରହଣ କରିଥିଲେ । ଅସୁରୀ ହିଡ଼ିମ୍ବା ମଧ୍ୟମପାଣ୍ଡବ ଭୀମଙ୍କର ପତ୍ନୀ ହୋଇଥିଲେ । ଅସୁରମାନଙ୍କ ପ୍ରତାପରେ ଦେବରାଜ ମଧ୍ୟ ଭୀତ ହୋଇଥିଲେ ।

ଏହିସବୁ ଦୃଷ୍ଟିରୁ କେବଳ ଅସୁର ବୋଲି ବାଣର ଚରିତ୍ରରେ ନିଷ୍ଠୁରତା ପ୍ରଭୃତି ଦୁର୍ଗୁଣ ଆରୋପ କରିବା ଅନୁଚିତ । ବାସ୍ତବରେ ଶିଶୁ ଶଙ୍କର ବାଣାସୁରଠାରେ ବିବିଧ ମାନବୋଚିତ ସଦ୍‌ଗୁଣର ସମାବେଶ କରିଅଛନ୍ତି । ତାହାର କେତେକ ସଦ୍‌ଗୁଣ ନିକଟରେ ନତମସ୍ତକ ହେବାକୁ ପଡ଼େ ।

ଉଷାଭିଳାଷରୁ ଜଣାଯାଏ ବାଣାସୁର ନିଷ୍କାମ ଭାବରେ ଶିବଙ୍କୁ ତପସ୍ୟା କରିଥିଲା । କିନ୍ତୁ ଶିବ ପ୍ରୀତ ହୋଇ ତାକୁ ସହସ୍ରବାହୁ କରି ଦେଇଥିଲେ । ପରାକ୍ରମରେ ସେ ଅଦ୍ୱିତୀୟ ହୋଇଥିଲା । ତ୍ରିଭୁବନରେ ତାର ସମକକ୍ଷ ଆଉ ନ ଥିଲେ । ଇନ୍ଦ୍ରପୁର ମଧ୍ୟ ତା ଭୟରେ କମ୍ପୁଥିଲା । ଏଥିରେ ତାର ଆତ୍ମାଭିମାନ ଆସିଛି । ତେଣୁ ସେ ଶିବଙ୍କୁ ଜଣାଇଛି—

"ସହସ୍ରେ ଭୁଜବଳ ନୋହେ ସହି
ଯୁଦ୍ଧକୁ ତ ମୋତେ ସମାନ ନାହିଁ ।
ତୋର ସମାନ ଜଣେ ଯୋଦ୍ଧା ଦେଇ
ବଳ ଶାନ୍ତ ମୋର କର ଗୋସାଇଁ ।।

ଏଥିରେ ଶିବ କୁପିତ ହୋଇ ଆଦେଶ ଦେଲେ—

ଯେତେବେଳେ ତୋର ରଥଧ୍ୱଜରୁ ପତାକା ପତିତ ହେବ, ସେତେବେଳେ ତୁ ତୋର ଉପଯୁକ୍ତ ପ୍ରତିପକ୍ଷ ପାଇବୁ । ଏହି ଆତ୍ମାଭିମାନ ହେଲା ବାଣଚରିତ୍ରର ଏକ ପ୍ରଧାନ ଦୁର୍ବଳତା ।

ପ୍ରହରୀଠାରୁ ବାଣାସୁର ସମ୍ବାଦ ପାଇଛି ଯେ ଉଷା ତାର ଅନ୍ତଃପୁରରେ କୌଣସି ପୁରୁଷ ସଙ୍ଗେ ରହିଅଛି । ଏଭଳି ସମ୍ବାଦରେ ଯେକୌଣସି ପିତା କ୍ରୋଧାନ୍ଧ ହେବାର କଥା । ବାଣାସୁରର କ୍ରୋଧ ମଧ୍ୟ ଉଦ୍ଦୀପିତ ହୋଇଅଛି । ସେ ତତ୍‌କ୍ଷଣାତ୍ ବାହାରିଛି ଏହି ପୁରୁଷର ଦଣ୍ଡବିଧାନ କରିବାକୁ । ଏହି ସମୟରେ ତାର

ରଥର ଧ୍ୱଜା ପତିତ ହୋଇଅଛି । ରାଜା ସ୍ୱଭାବରେ ତଥା ପିତା ସ୍ୱଭାବରେ ତାର କର୍ତ୍ତବ୍ୟ ହେଉଛି ଉଷାପୁରରେ ଥିବା ଏହି ପୁରୁଷକୁ ଦଣ୍ଡ ଦେବା । ସେହି ଉଦ୍ଦେଶ୍ୟରେ ସେ ଉଷାମେଢ଼କୁ ଯାଇ —

"ଦେଖିଲା ମେଢ଼ଦ୍ୱାରେ ଦିବ୍ୟରୂପ
ମାଳମଣି ଶ୍ୟାମ ଆନନ୍ଦ-କୂପ ।
ପୀତପଟମା ଗଳେ ବନମାଳ
କେକପୁଚ୍ଛ ଶୋଭା ସେବନ୍ତିଚୂଳ ।
ସ୍ୱୟଂ କୃଷ୍ଣ ଶୋଭା
ଅମଳ କମଳ ଲୋଚନପ୍ରଭା ॥

ଏପରି ରୂପବାନ୍ ଅନିରୁଦ୍ଧଙ୍କୁ ଦେଖି ସେ ହଠାତ୍ କିଛି କରି ପାରିନାହିଁ । ମାତ୍ର ରାଜାର କର୍ତ୍ତବ୍ୟ, ପିତାର କର୍ତ୍ତବ୍ୟ ପାଳନ ସେ କରିବାକୁ ଅନିରୁଦ୍ଧଙ୍କୁ ଦଣ୍ଡ ଦେବାକୁ ଆକ୍ରମଣ କରିଛି । କିନ୍ତୁ ଅନିରୁଦ୍ଧଙ୍କ ଆଘାତରେ ମୋହପ୍ରାପ୍ତ ହୋଇ ରଥରେ ପଡ଼ିଛି । ପରେ ମନ୍ତ୍ରୀର ପରାମର୍ଶରେ ମାୟାଯୁଦ୍ଧ କରି ଅନିରୁଦ୍ଧଙ୍କୁ ବଧ ନ କରି ନାଗପାଶରେ ବନ୍ଧନ କରିଅଛି ।

ଅନିରୁଦ୍ଧଙ୍କ ବନ୍ଧନ ସମ୍ବାଦ ପାଇ ଶ୍ରୀକୃଷ୍ଣ ଦ୍ୱାଦଶ ଅକ୍ଷୌହିଣୀ ସୈନ୍ୟ ସହ ଶୋଣିତପୁର ଅବରୋଧ କରିଅଛନ୍ତି । ଏଥିରେ ବାଣାସୁର କାତର ନ ହୋଇ ରଥରେ ବସି ଯୁଦ୍ଧ କରିବାକୁ ଯାଇଛି । ଶିବ ସକଳ ଅନୁଚର ସହିତ ନିଜର ଭକ୍ତ ବାଣାସୁରକୁ ସାହାଯ୍ୟ କରିଅଛନ୍ତି । ଉଭୟ ପକ୍ଷର ଭୀଷଣ ଯୁଦ୍ଧ ପରେ ବ୍ରହ୍ମାଙ୍କ ଅନୁରୋଧରେ ଯୁଦ୍ଧ ବନ୍ଦ ହୋଇଅଛି । ଶ୍ରୀକୃଷ୍ଣ ବାଣାସୁରର ଦୁଇଟି ମାତ୍ର ବାହୁ ରଖି ଅନ୍ୟଗୁଡ଼ିକ କାଟିଦେଇଅଛନ୍ତି । ତାର ଗର୍ବ ଖର୍ବ

ହୋଇଅଛି । ବାଣାସୁର ପ୍ରତି ଶିବଙ୍କର ଭବିଷ୍ୟଦ୍‌ବାଣୀ ମଧ୍ୟ ସଫଳ ହୋଇଅଛି ।

ଶିଶୁ ଶଙ୍କର ବାଣାସୁର ପ୍ରତି ଯଥେଷ୍ଟ ସହାନୁଭୂତି ଦେଖାଇ ଅଛନ୍ତି ଓ ତାହାଠାରେ ମାନବସୁଲଭ ସଦ୍‌ଗୁଣ ଦେଇଅଛନ୍ତି । ତାଙ୍କ ଲେଖାରେ ବାଣାସୁର ଜଣେ ଆଦର୍ଶ ବୀର, ଆଦର୍ଶ ରାଜା ଓ ଆଦର୍ଶ ପିତା ହୋଇଅଛି । ତାର ଏକମାତ୍ର ଦୋଷ ହେଉଛି ଅଭିମାନ ଓ ସେଥିପାଇଁ ସେ ଉପଯୁକ୍ତ ଦଣ୍ଡ ଭୋଗିଅଛି ।

ସଂସ୍କୃତ ଭାଗବତ ଅନୁସାରେ ଶ୍ରୀକୃଷ୍ଣ ବାଣାସୁରର ଚାରି-ଗୋଟି ବାହୁ ଛାଡ଼ି ଦେଇଥିଲେ ।

ଚତ୍ୱାରୋଽସ୍ୟ ଭୁଜାଃ ଶିଷ୍ଟା ଭବିଷ୍ୟନ୍ତ୍ୟଜରାମରଃ ।
ପାର୍ଷଦମୁଖ୍ୟୋ ଭବତଃ ନ କୁତଶ୍ଚିଦ୍‌ଭୟୋଽସୁରଃ ॥

କିନ୍ତୁ ବାଣାସୁର ଶ୍ରୀକୃଷ୍ଣଙ୍କ ଠାରୁ ଶିବଙ୍କର ପାର୍ଷଦମୁଖ୍ୟ ହେବାକୁ ବର ପାଇବା କଥା ଶିଶୁ ଶଙ୍କର କଳ୍ପନାପ୍ରସୂତ ।

**ଅନିରୁଦ୍ଧ**—କାମଦେବଙ୍କ ପୁତ୍ର ଓ ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧ ଏହି କାବ୍ୟର ନାୟକ । ତାଙ୍କର ରୂପ ବିଷୟରେ କବି କହିଛନ୍ତି—

ଦିବ୍ୟରୂପ ନୀଳମଣି ଶ୍ୟାମ ଆନନ୍ଦ କୂପ ।
ପୀତ ପଟମ ଗଳେ ବନମାଳା
କେକିପୁଚ୍ଛ ଶୋଭା ସେବନ୍ତିଚୂଳ
ସ୍ୱୟଂ କୃଷ୍ଣଶୋଭା
ଅମଳ କମଳ ଲୋଚନ ପ୍ରଭା ॥

କାମଦେବ ସୌନ୍ଦର୍ଯ୍ୟରେ ଅଦ୍ୱିତୀୟ । ତାଙ୍କର ପୁତ୍ର ଯେ ସେହିପରି ସୁନ୍ଦର, ଏଥିରେ ସନ୍ଦେହ ନାହିଁ । ଅନିରୁଦ୍ଧଙ୍କୁ ଉଷା

ପ୍ରଥମେ ସ୍ୱପ୍ନରେ ଲବ୍ଧ କରିଅଛି ଓ ତତ୍ପରେ ଚିତ୍ରଲେଖା ମାୟାବଳରେ ତାଙ୍କୁ ଦ୍ୱାରିକାରୁ ଆଣି ଉଷାଙ୍କ ସହିତ ମିଳାଇଅଛି । ଏଠାରେ ସେ ଉଷାଙ୍କୁ ଗାନ୍ଧର୍ବ ରୀତିରେ ବିବାହ କରି କେତେକ ଦିନ ସୁଖରେ ଅତିବାହିତ କରିଅଛନ୍ତି । ଏ ସମୟରେ ଆମେ ତାଙ୍କୁ ଏକ ପ୍ରେମିକ ପତିରୂପରେ ଦେଖୁଁ । ଉଷାର ପ୍ରୀତି ସମ୍ପାଦନ ହିଁ ତାଙ୍କର ପ୍ରଧାନ କାର୍ଯ୍ୟ ହୋଇଅଛି ।

ଅନିରୁଦ୍ଧଙ୍କର ବଳବୀର୍ଯ୍ୟର ପରିଚୟ ମିଳେ ବାଣାସୁର ସହିତ ତାଙ୍କର ଯୁଦ୍ଧରୁ । ଜଣେ ପୁରୁଷ ଉଷାପୁରରେ ଥିବା ସମ୍ବାଦରେ ସେ କୁପିତ ହୋଇ ତାଙ୍କୁ ଦଣ୍ଡ ଦେବାକୁ ଆସିଛି । ସମ୍ମୁଖରେ ସେ ଦେଖିବାକୁ ପାଇଛି ଅନିରୁଦ୍ଧଙ୍କର ଅନିନ୍ଦ୍ୟସୁନ୍ଦର ରୂପ । କିନ୍ତୁ ନିଜର କର୍ତ୍ତବ୍ୟ ସାଧନ ପାଇଁ ଅନିରୁଦ୍ଧଙ୍କ ସଙ୍ଗରେ ଯୁଦ୍ଧରେ ରତ ହୋଇଅଛି । ଅନିରୁଦ୍ଧ ଏପରି ଅବସ୍ଥା ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । ଏପରି କି ପଶାଖେଳର ପଶାକାଠି ତାଙ୍କ ହାତରେ ଥିଲା । କିନ୍ତୁ ସେ କାତର ନ ହୋଇ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଅଛନ୍ତି ଓ ବୀରୋଚିତ ପରାକ୍ରମ ପ୍ରକାଶ କରିଛନ୍ତି । ଯୁଦ୍ଧୋଦ୍ୟତ ବାଣାସୁରକୁ ଦେଖି ସେ ହସ୍ତରେ ଲୌହ ପରିଘ ଧରି ଯୁଦ୍ଧ କରିବାକୁ ଅଗ୍ରସର ହୋଇଅଛନ୍ତି । ତାଙ୍କ ଯୁଦ୍ଧର ବର୍ଣ୍ଣନା ଦେଇ କବି କହିଅଛନ୍ତି—

"ସୂର୍ଯ୍ୟମଣି ଯେହ୍ନେ ରବିଙ୍କି ଦେଖି
ତେସନେ ବୀର ଦନୁଜ ନିରେଖି,
ବିକ୍ରମେ ବିକ୍ରମ କେଶରୀ ମତ
ବହୁତ ସୈନ୍ୟ ସେ କଲା ନିପାତ;
ତା ପରିଘଘାତେ, ମୋହ ହୋଇଲା ବାଣାସୁର ରଥେ ॥

ଙ

କିନ୍ତୁ ଅନିରୁଦ୍ଧଙ୍କର ଏହି ବିଜୟ ଦୀର୍ଘକାଳ ସ୍ଥାୟୀ ହୋଇ ନ ଥିଲା। କୁମ୍ଭାଣ୍ଡ ମନ୍ତ୍ରୀର ପରାମର୍ଶରେ ବାଣାସୁର ମାୟାଯୁଦ୍ଧ କରିଛି ଓ ତାହା ଫଳରେ ଅନିରୁଦ୍ଧ ନାଗପାଶ ବନ୍ଧନରେ ପଡ଼ିଅଛନ୍ତି । ଅନିରୁଦ୍ଧଙ୍କର ଏହି ପରାଜୟ ପ୍ରତ୍ୟକ୍ଷ ସଂଗ୍ରାମରେ ଘଟି ନାହିଁ । ତେଣୁ ତାଙ୍କ ବୀରତ୍ୱରେ ସନ୍ଦେହ କରିବାର ଅବକାଶ ନାହିଁ । କୁମ୍ଭାଣ୍ଡ ଅନିରୁଦ୍ଧଙ୍କର ବଳବୀର୍ଯ୍ୟ ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥିଲା । ସେ ବାଣାସୁର କାନରେ କହୁଛି—

"ତୁ ବୀର ସିନା ସେହୁ ବୀରବର
ପାରିଲେ ଏଥି ମାୟାଯୁଦ୍ଧ କର
ଏ ସାମାନ୍ୟ ନୋହେ ।..."

ନାରଦଙ୍କଠାରୁ ଅନିରୁଦ୍ଧଙ୍କର ଶୋଣିତପୁରରେ ଅବସ୍ଥାନ ଓ ବାଣାସୁର କର୍ତ୍ତୃକ ନାଗପାଶବନ୍ଧନ ସମ୍ବାଦ ପାଇ ଶ୍ରୀକୃଷ୍ଣ ଶୋଣିତପୁରକୁ ଆସି ତାଙ୍କୁ ନାଗପାଶରୁ ଉଦ୍ଧାର କରିଛନ୍ତି । ବାଣାସୁରକୁ ଉପଯୁକ୍ତ ଦଣ୍ଡ ଦେଇ

"ବରକନ୍ୟା ଆଣି କୃଷ୍ଣ ବସାଇଲେ କୋଳେ
ଶଙ୍ଖ ବଜାଇ ବାହୁଡ଼ି ପରମ ମଙ୍ଗଳେ ।"

ଅନିରୁଦ୍ଧଙ୍କ ଚରିତ୍ରରେ ଆମେ ପ୍ରେମିକସୁଲଭ କୋମଳତା ସଙ୍ଗେ ବୀରସୁଲଭ କଠୋରତାର ମଧୁର ମିଳନ ଦେଖିବାକୁ ପାଉଁ । ତାଙ୍କର ହୃଦୟ ବାସ୍ତବରେ କୁସୁମ ସଦୃଶ କୋମଳ ଓ ବଜ୍ର ସଦୃଶ କଠୋର ଥିଲା ।

**ଶ୍ରୀକୃଷ୍ଣ**— ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ଦ୍ୱାରକାର ରାଜା ରୂପେ ଏହି କାବ୍ୟରେ ବର୍ଣ୍ଣିତ । କିନ୍ତୁ ଏଥିରେ ତାଙ୍କୁ ମାନବସୁଲଭ ଗୁଣରେ ବିଭୂଷିତ କରିଅଛନ୍ତି । ସମୁଦ୍ର ମଧ୍ୟସ୍ଥିତ ଦ୍ୱାରକାପୁର

ତାଙ୍କର ରାଜଧାନୀ । ସହସ୍ର ସହସ୍ର ମନ୍ତ୍ରୀ ତାଙ୍କର ସେବାରେ ନିଯୁକ୍ତ । ସେ ନାରଦଙ୍କ ମୁଖରୁ ଶୁଣିବାକୁ ପାଇଛନ୍ତି—

"ବାଣାସୁରଝିଅ ଚୋର ହରିଲା ନାତି
ଜାଣିଣ ବନ୍ଧନ ତାଙ୍କୁ କଲା ନୃପତି ।
ତୁରିତେ ଛଡ଼ାଇ ବେଗେ ଅସୁର ମାରି..."

ଏହା ଶୁଣି ଶ୍ରୀକୃଷ୍ଣ ଅନିରୁଦ୍ଧଙ୍କ ଉଦ୍ଧାର ନିମନ୍ତେ ଚତୁରଙ୍ଗ ବଳ ଘେନ ଶୋଣିତପୁରରେ ଉପସ୍ଥିତ ହୋଇଛନ୍ତି । ବାଣାସୁର ମଧ୍ୟ ସୈନ୍ୟସହ ଯୁଦ୍ଧ କରିବାକୁ ବାହାରିଛି । ତା ସଙ୍ଗରେ ପୁଣି ଶିବ ଓ ତାଙ୍କର ଅନୁଚରମାନେ ।

"ରାମକୃଷ୍ଣ ସାହା ପାଇ ଯଦୁବୀରମାନେ
ରଣେ ବାଣା ବଳ ପେଷି କୃତାନ୍ତ ସଦନେ ।"

ଶେଷରେ ଶ୍ରୀକୃଷ୍ଣ ଓ ଶିବଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେବାରୁ ଭୟରେ ତିନିପୁର କମ୍ପି ଉଠିଛି । କିନ୍ତୁ ବ୍ରହ୍ମାଙ୍କ ଅନୁରୋଧରେ ଶିବ ଯୁଦ୍ଧରୁ କ୍ଷାନ୍ତ ହୋଇଅଛନ୍ତି । ହରିହର ଯୁଦ୍ଧ ବନ୍ଦ ହୋଇଅଛି । ଶ୍ରୀକୃଷ୍ଣ ବାଣାସୁରକୁ ବଧ କରିବାକୁ ଭବାନୀ ତାଙ୍କୁ ବାରଣ କରିଅଛନ୍ତି ଓ ଶ୍ରୀକୃଷ୍ଣ ତାର ଦୁଇଟିବାହୁ ଛଡ଼ା ଅନ୍ୟଗୁଡ଼ିକ ଛେଦନ କରି ଦେଇଅଛନ୍ତି । ଶ୍ରୀକୃଷ୍ଣ ଅନିରୁଦ୍ଧ ଓ ଉଷାଙ୍କୁ ନିଜ ପୁରକୁ ନେଇ ସେଠାରେ ସେ ଦୁହିଁଙ୍କର ବିବାହ ଉତ୍ସବ ସମ୍ପାଦନ କରିଅଛନ୍ତି ।

ଶ୍ରୀକୃଷ୍ଣଙ୍କର ଅନିରୁଦ୍ଧଙ୍କର ପ୍ରତି ସ୍ନେହ, ଯୁଦ୍ଧରେ ବୀରତ୍ୱ ଓ କର୍ତ୍ତବ୍ୟପାଳନରେ ନିଷ୍ଠା ଏହି କାବ୍ୟରେ ପ୍ରଦର୍ଶିତ ହୋଇ-ଅଛି ।

# ଉଷାଭିଳାଷର ରଚନାଶୈଳୀ

ପୂର୍ବରୁ କୁହାଯାଇଅଛି ଯେ ଓଡ଼ିଆରେ ଖଣ୍ଡକାବ୍ୟର ଜନ୍ମଦାତାମାନଙ୍କ ମଧ୍ୟରେ ଶିଶୁ ଶଙ୍କର ଅନ୍ୟତମ । ତେଣୁ ସେ ସଂସ୍କୃତ କାବ୍ୟମାନଙ୍କର ରଚନାଶୈଳୀକୁ ଅନୁସରଣ କରିଅଛନ୍ତି । ଆଳଙ୍କାରିକ ବିଶ୍ୱନାଥ କବିରାଜଙ୍କ

ଆଦୌ ନମସ୍କ୍ରିୟାଶୀର୍ବା ବସ୍ତୁନିର୍ଦ୍ଦେଶ ଏବ ବା ।
କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଂ ଚ ଗୁଣକୀର୍ତ୍ତନମ୍ ॥

ମତ ଅନୁସରଣ କରି କବି କାବ୍ୟର ଆରମ୍ଭରେ ସ୍ୱୀୟ ଇଷ୍ଟଦେବ ନୀଳାଦ୍ରିନାଥଙ୍କୁ ନମସ୍କାର ଜଣାଇ ସାଧୁଗୁଣ କୀର୍ତ୍ତନ ଓ ଖଳନିନ୍ଦା କରିଅଛନ୍ତି । ତତ୍ପରେ ସେ ବିଷୟବସ୍ତୁର ଅବତାରଣା କରିଅଛନ୍ତି ।

କାବ୍ୟର ନାୟକ ତ୍ୟାଗୀ, କୃତୀ, କୁଳୀନ, ସୁଶ୍ରୀ, ରୂପଯୌବନସମ୍ପନ୍ନ, ଉତ୍ସାହୀ, ଦକ୍ଷ, ଅନୁରକ୍ତ, ସଦ୍‌ବୃତ୍ତ ଓ ବିଦଗ୍ଧ ହେବା ଉଚିତ । ଶିଶୁ ଶଙ୍କର ଅନିରୁଦ୍ଧଙ୍କୁ ଏହିସବୁ ସଦ୍‌ଗୁଣରେ ମଣ୍ଡିତ କରିଅଛନ୍ତି । ତାଙ୍କର ଅନିରୁଦ୍ଧ ରାମ ଯୁଧିଷ୍ଠିରାଦିଙ୍କ ପରି ଧୀରୋଦାତ୍ତ ନାୟକ ଓ ଉଷା ମୁଗ୍‌ଧା ନାୟିକା ।

କାବ୍ୟ ସଂସ୍କୃତ ମହାକାବ୍ୟର ଆଦର୍ଶକୁ ଲକ୍ଷ୍ୟ ରଖି ଏହି କ୍ଷୁଦ୍ର ଓଡ଼ିଆ ମହାକାବ୍ୟ ଲେଖିଥିବାର ଅନୁମିତ ହୁଏ । ମହାକାବ୍ୟର ଲକ୍ଷଣ ନିମ୍ନଲିଖିତମତେ ପ୍ରକାଶ କରାଯାଇପାରେ ।

ମହାକାବ୍ୟରେ ସର୍ଗସଂଖ୍ୟା ଆଠରୁ ଅଧିକ ହୋଇଥାଏ । ଏହାର ନାୟକ ଜଣେ ବୀର, ସଦ୍‌ବଂଶଜ, ଧୀରୋଦାତ୍ତ ବ୍ୟକ୍ତି ଅଥବା ଏକବଂଶୋଦ୍‌ଭବ ବହୁବ୍ୟକ୍ତି ହୋଇପାରନ୍ତି । ଏଥିରେ ଶୃଙ୍ଗାର, ବୀର, ଶାନ୍ତ ପ୍ରଭୃତି ରସମାନଙ୍କ ମଧ୍ୟରୁ କୌଣସି ଏକ

ରସ ମୁଖ୍ୟ ଭାବରେ ଥାଏ । ଏଥିରେ ସର୍ଗଗୁଡ଼ିକ ବିଭିନ୍ନ ବୃତ୍ତରେ ରଚିତ । ସନ୍ଧ୍ୟା, ରଜନୀ, ପ୍ରାତଃ, ମଧ୍ୟାହ୍ନ, ଚନ୍ଦ୍ର, ସୂର୍ଯ୍ୟ, ଶୈଳ, ବନ, ସାଗର, ମୃଗୟା, ଋତୁ, ସମ୍ଭୋଗ, ବିପ୍ରଲମ୍ଭ, ବିବାହ, ପ୍ରଭୃତିର ଯଥାସମ୍ଭବ ବର୍ଣ୍ଣନା ହେବା ଉଚିତ । (ସାହିତ୍ୟ ଦର୍ପଣର ଷଷ୍ଠ ପରିଚ୍ଛେଦ ଦ୍ରଷ୍ଟବ୍ୟ) ।

ଉଷାଭିଳାଷ କାବ୍ୟ ବାରସର୍ଗରେ ଲିଖିତ ଓ ଛାନ୍ଦଗୁଡ଼ିକ ବିଭିନ୍ନ ବୃତ୍ତରେ ରଚିତ । ଏଥିରେ ବସନ୍ତ, ଗ୍ରୀଷ୍ମ, ବର୍ଷା ଓ ଶରତ୍ ଋତୁର ବର୍ଣ୍ଣନା ଅଛି । ନାୟକନାୟିକାଙ୍କର ଗାନ୍ଧର୍ବ ବିବାହ, ସରୋବର, ଉପବନ, ଯୁଦ୍ଧ ପ୍ରଭୃତିର ବର୍ଣ୍ଣନା ଅଛି । ତେଣୁ ଅନୁମିତ ହୁଏ, କବି ଏହାକୁ କ୍ଷୁଦ୍ର ଆକାରରେ ଏକ ମହାକାବ୍ୟରୂପେ ପରିକଳ୍ପନା କରିଥିଲେ ।

କବି ପୌରାଣିକ ଆଖ୍ୟାନକୁ ମୂଳରୂପେ ଗ୍ରହଣ କରି ସେଥିରେ କଳ୍ପନାର ମିଶ୍ରଣ କରି କାବ୍ୟଟିକୁ ସୃଷ୍ଟି କରିଅଛନ୍ତି । ତାଙ୍କର ପଦ-ଲାଳିତ୍ୟ ପ୍ରତି ଦୃଷ୍ଟି ଦେଲେ ମନେହୁଏ, ସଂସ୍କୃତ ଗୀତଗୋବିନ୍ଦକାର ଜୟଦେବଙ୍କର ଭାଷାକୁ ସେ ଅନୁସରଣ କରିଅଛନ୍ତି । ଜୟଦେବଙ୍କ ଶ୍ରୀକୃଷ୍ଣ ସମ୍ଭୋଗାନ୍ତେ ରାଧାଙ୍କର ଯେପରି ବେଶ ରଚନା କରିଅଛନ୍ତି, ଶିଶୁ ଶଙ୍କରଙ୍କ ଅନିରୁଦ୍ଧ ମଧ୍ୟ ଠିକ୍ ସେହିପରି ଉଷାର ବେଶ ରଚନା କରିଅଛନ୍ତି । (ଉଷାଭିଳାଷର ଅଷ୍ଟମ ଛାନ୍ଦ ସହ ଗୀତଗୋବିନ୍ଦର ଦ୍ୱାଦଶ ସର୍ଗ ତୁଳନୀୟ) ।

କବି ଉଷାମୁଖରେ ଏକାଧିକ ବାର କରୁଣ ବିଳାପ ଦେଇ-ଛନ୍ତି । ସ୍ୱପ୍ନରେ ଅନିରୁଦ୍ଧଙ୍କ ସମ୍ଭୋଗ ପରେ ନିଦ୍ରାଭଙ୍ଗ ହେବାରୁ ସେ ପ୍ରଥମେ ବିଳାପ କରିଅଛନ୍ତି । (ପଞ୍ଚମ ଛାନ୍ଦ) ପୁଣି ପ୍ରାଣପ୍ରିୟ ଅନିରୁଦ୍ଧଙ୍କର ନାଗପାଶ ବନ୍ଧନରେ ସେ ଦ୍ୱିତୀୟ ବାର ବିଳାପ କରିଅଛନ୍ତି (ଏକାଦଶ ଛାନ୍ଦ) । ଏହି ଦୁଇ ବିଳାପବାଣୀରେ

କାଳିଦାସଙ୍କ କୁମାର ସମ୍ଭବର (ଚତୁର୍ଥ ସର୍ଗ) ରତିବିଳାପର ଛାୟା ପଡ଼ିଥିଲା ପରି ମନେହୁଏ । ସପ୍ତମ ଛାନ୍ଦରେ ଅନିରୁଦ୍ଧ ଉଷାକୁ ଚାଟୁବାଣୀ ଶୁଣାଇଛନ୍ତି—

"ତୁ ମୋର ଦେହ ଜୀବନ ତୁ ମୋର ଭୂଷଣମାନ
ତୁ ମୋର ଇନ୍ଦ୍ରିବିଷୟ ମନ-ସଦନ
ତୁ ମୋହର ମୁକୁଟ ଶିରେ
ତୁ ମୋର ସୁକୃତ ଫଳ ସୁଖସାଗରେ ।
ତୁ ମୋର ଗୁରୁଚନ୍ଦନ ତୁ ମୋର ଶିରବନ୍ଦନ
× × ×
ତୁ ମୋହର ସବୁ ରମଣୀ ।
ମୁଁ ତୋହର ପରିଚର କି କେ ନ ଗଣି ॥"

ଏଠାରେ କବି ଜୟଦେବଙ୍କ ଗୀତଗୋବିନ୍ଦର ଦଶମ ସର୍ଗର ବର୍ଣ୍ଣନାଶୈଳୀ ଗ୍ରହଣ କରିଥିବାର ଅନୁମାନ କରାଯାଇପାରେ । କବି ଶିଶୁ ଶଙ୍କର ସଂସ୍କୃତ କବିମାନଙ୍କର ରଚନାପଦ୍ଧତି ଅନୁସରଣ କରି ସେଥିରେ ନିଜର ମୌଳିକତା ମିଶାଇ ଏକ ଅପୂର୍ବ କାବ୍ୟ ରଚନା କରିବାକୁ ସମର୍ଥ ହୋଇଅଛନ୍ତି । ତାଙ୍କର ରଚନା ଯେ ଜନସମାଜରେ ବିଶେଷ ଆଦୃତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ତାଙ୍କର ପରବର୍ତ୍ତୀ ଅନେକ କବି ଉଷାଭିଳାଷର ଛାନ୍ଦ ବିଶେଷକୁ ନିଜ ନିଜ ରଚନାରେ ବାଣୀରୂପେ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଇଅଛନ୍ତି । ଉଷାଭିଳାଷରେ ଉପମା, ଉତ୍ପ୍ରେକ୍ଷା ପ୍ରଭୃତି ଅଳ୍ପ କେତୋଟି ଅର୍ଥାଳଙ୍କାରର ସୁଷମ ପ୍ରୟୋଗ କାବ୍ୟଟିକୁ ମଧୁର ଓ ହୃଦୟଗ୍ରାହୀ କରି ପାରିଅଛି ।

# ଉଷାଭିଳାଷରେ ଶୃଙ୍ଗାରରସ

ଉଷାଭିଳାଷ ଏକ ଶୃଙ୍ଗାରରସପ୍ରଧାନ କାବ୍ୟ । ଏହା ସଙ୍ଗେ କରୁଣ ଓ ବୀରରସ ମଧ୍ୟ ଜଡ଼ିତ ଅଛି । କିନ୍ତୁ ଏହାର ମୁଖ୍ୟ ରସ ହେଉଛି ଶୃଙ୍ଗାର ଓ ଉଷା-ଅନିରୁଦ୍ଧଙ୍କର ପ୍ରଣୟ ହେଉଛି ଏହାର ପ୍ରତିପାଦ୍ୟ ବିଷୟ । ତେଣୁ ଏଥିରେ ପ୍ରେମର ବିଶଦ ବର୍ଣ୍ଣନା ଦେଖିବାକୁ ମିଳେ । ପ୍ରାଚୀନ ଓଡ଼ିଆ କାବ୍ୟମାନଙ୍କରେ ପ୍ରେମର ବହୁଳ ବିଶ୍ଳେଷଣ ଦେଖାଯାଏ । ଉପେନ୍ଦ୍ରଙ୍କ କାଳ୍ପନିକ କାବ୍ୟମାନଙ୍କରେ ବର୍ଣ୍ଣିତ ଆଦିରସକୁ ବିଜୟ ମଜୁମଦାର ବୀଭତ୍ସ ରସ ଆଖ୍ୟା ଦେବାକୁ କୁଣ୍ଠିତ ହୋଇନାହାନ୍ତି । କିନ୍ତୁ ଶିଶୁ ଶଙ୍କର ବା ଉପେନ୍ଦ୍ର ଭଞ୍ଜ ଯଦି ଅଶ୍ଳୀଳତା ଦୋଷରେ ଅଭିଯୁକ୍ତ ହୁଅନ୍ତି, ତେବେ ଜଗତର ଶ୍ରେଷ୍ଠ କବି ଆସନରେ ଆସୀନ କାଳିଦାସ ମଧ୍ୟ ସେହି ଦୋଷରୁ ମୁକ୍ତ ହୋଇ ପାରିବେ ନାହିଁ । ଯାହା ହେଉ କବି ଶିଶୁ ଶଙ୍କର ଜାଣିଥିଲେ ଯେ ବିପ୍ରଲମ୍ଭ ବିନା ସମ୍ଭୋଗ ଶୃଙ୍ଗାରର ମହତ୍ତ୍ୱ ରହେ ନାହିଁ । ତେଣୁ ସେ କେବଳ ନାୟକନାୟିକାଙ୍କର ସମ୍ଭୋଗ ବର୍ଣ୍ଣନା କରିନାହାନ୍ତି; ବିରହର ବର୍ଣ୍ଣନା ମଧ୍ୟ କରିଅଛନ୍ତି । ଶୃଙ୍ଗାରର ବର୍ଣ୍ଣନାରେ ଜୟଦେବ ଶ୍ରୀକୃଷ୍ଣଙ୍କ ମୁଖରେ ରାଧାଙ୍କୁ କହିଛନ୍ତି, "ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ ଦେହି ପଦପଲ୍ଲବମୁଦାରମ୍ ।" କିନ୍ତୁ ଶିଶୁ ଶଙ୍କରଙ୍କ ଅନିରୁଦ୍ଧ ବିବିଧ ଗୃହୀଁ କଲ୍ପ କରିଥିଲେ ହେଁ ଉଷାର ପଦପଲ୍ଲବକୁ ଶିରୋମଣ୍ଡନ କରିବାକୁ କହିନାହାନ୍ତି ।

କବି ଉଷାଅନିରୁଦ୍ଧଙ୍କୁ ଅପ୍ରାକୃତ ପ୍ରେମମୂର୍ତ୍ତି ରାଧାହରିରୂପେ ଚିତ୍ରଣ କରିନାହାନ୍ତି କିମ୍ବା ଆଧୁନିକ ଯୁଗର ପ୍ରେମିକପ୍ରେମିକା-ରୂପେ ଚିତ୍ରଣ କରିନାହାନ୍ତି । ଉଷା ଓ ଅନିରୁଦ୍ଧଙ୍କର ମିଳନ ହୋଇ

ବଧିରେ ଘଟିଛି । ଉଷା କହ୍ନଚନ୍ଦ୍ର—ବୈଶାଖ ଶୁକ୍ଳ ତ୍ରୟୋଦଶୀ ତିଥିରେ ଉଷା ଯେଉଁ ପୁରୁଷକୁ ସ୍ୱପ୍ନରେ ଦେଖିବ, ସେହି ହେବେ ତାର ପତି । ତାହା ହିଁ ଘଟିଛି । ଦୈବନିର୍ଦ୍ଦେଶକୁ କାର୍ଯ୍ୟରେ ପରିଣତ କରିବାରେ ଚିତ୍ରଲେଖା ନିମିତ୍ତ ମାତ୍ର ହୋଇଅଛି । ଅନିରୁଦ୍ଧ ଉଷାମେଢ଼କୁ ଆନୀତ ହେବାପରେ ଦୁହେଁ ଦୁହିଁଙ୍କୁ ଦେଖି ମୁଗ୍ଧ ହୋଇଅଛନ୍ତି; କିନ୍ତୁ କବି ଦୁହିଁଙ୍କଠାରେ ସଂଯମ ଦର୍ଶାଇ ହଠାତ୍ ସେମାନଙ୍କର ଦୈହିକ ମିଳନ ଘଟାଇ ନାହାନ୍ତି । ଆଗେ ଚିତ୍ରଲେଖା ସମକ୍ଷରେ ଦୁହେଁ ଗାନ୍ଧର୍ବ ବିଧିରେ ବିବାହ କରି ତତ୍ପରେ ପ୍ରଣୟୀରତ ହୋଇଛନ୍ତି । ପ୍ରେମିକପ୍ରେମିକାଙ୍କର ହାବଭାବ ଓ କ୍ରିୟାକଳାପ ବର୍ଣ୍ଣନାରେ କବି ଯଥେଷ୍ଟ ପାରଦର୍ଶିତା ଦେଖାଇ ପାରିଛନ୍ତି ।

## ଉଷାଭିଳାଷରେ ପ୍ରାଚୀନ ଶବ୍ଦ

ପୂର୍ବରୁ ପ୍ରଦର୍ଶିତ ହୋଇଅଛି ଯେ ଉଷାଭିଳାଷ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗର ରଚନା । ଓଡ଼ିଆ ଭାଷା ବିଗତ ଚୂରିଶହ ବର୍ଷ ମଧ୍ୟରେ ବହୁ ପରିମାଣରେ ପରିବର୍ତ୍ତିତ ହୋଇଅଛି । କେତେ ନୂତନ ଶବ୍ଦ ଓଡ଼ିଆ ଭାଷାରେ ପ୍ରବେଶ କରି ରହିଛନ୍ତି; କେତେ ଲୋପ ପାଇ ଯାଇଛନ୍ତି ଓ ଆଉ କେତେ ନବକଳେବର ଧାରଣ କରିଛନ୍ତି । ଉଷାଭିଳାଷରେ ବ୍ୟବହୃତ ହୋଇଥିବା କେତେକ ପ୍ରାଚୀନ ଶବ୍ଦର ତାଲିକା ନିମ୍ନରେ ଦିଆଯାଉଛି ।

ଆରେଣି (ଶ୍ରେଷ୍ଠ), ମଝା (ମଧ୍ୟ), ତୁଣ୍ଡୋଦରୀ (କୃଶୋଦରୀ), ଏହୁହାଁ (ଏହାଠାରୁ), ରହୁବର (ରଥ), ଶପ୍ନକ (ଶୈଳ), ଜଳେଣ (ଜଳରେ), ଭବେଣ (ଭବରେ), ହେନ (ଏପରି), ଯାହାଁ

(ପର୍ଯ୍ୟଙ୍କରେ), ପୋଏକା (ଘୋଡ଼ାଳା, ଘ-ପ୍ରବାଳ), ଶୁତଲ୍ଲ (ଶୋଇଲ) ହେଠବଦନ (ମୁହଁ ତଳକୁ କରି), ଲିହ୍ବବା (ଲେଖିବା), ଚିତୋଇ (ଚିନ୍ତା କରି, ମନେ ପକାଇ), ହାଇବାଇ (ଅସ୍ଥିର ହୋଇ), ଉନୁମତ (ଉନ୍ମତ୍ତ), କଣ୍ୟୁ (ସୁନା, ଘ-କନକ), ଓଡ଼ି (ଘୋଡ଼ାଇ ହୋଇ), ଉଚ୍ଛାହା (ଉତ୍ସାହିତ), ନହେ (ନଖରେ), ମୃଗାଛି (ମୃଗାକ୍ଷୀ), ଇନ୍ଦ୍ର (ଇନ୍ଦ୍ର ପ୍ରଭୃତି), ଚିତୋଇଲ୍ଲ (ମନାଇଲା), ସିତକାର (ସୀତ୍କାର), ସାତୁକ୍ୟ (ସାତ୍ତ୍ୱିକ), କଚ୍ଛୁ (କଛି), ମୟ୍ଣା (ମଦନ), ବେଣ୍ଣୋଲ୍ଲ (ଅଳଙ୍କାରବିଶେଷ), ଖଳତ (ସ୍ଖଳିତ), ସବର୍ଦ୍ଧେ (ସର୍ବାଙ୍ଗେ), ଫୁରିବା (ସ୍ଫୁରିବା), ମେଦ୍ଧ (ମେଘ), ବରଗ (ବିରାଗ, ବିରକ୍ତକର), ଧଉର୍ଯ୍ୟ (ଧୈର୍ଯ୍ୟ), ହ୍ୱୟ୍ମା (ହୃଦୟ), କପୈବାର (ସ୍ତୁତିପାଠ), ମନ୍ତ୍ରିବାୟେ (ମନ୍ତ୍ରିବାରେ, ମନ୍ତ୍ରିବାହେତୁ), ସାନନ୍ଦେଶ (ସାନନ୍ଦରେ) ।

## ପରବର୍ତ୍ତୀ କବିଙ୍କ ଉପରେ ଉଷାଭିଳାଷର ପ୍ରଭାବ

ଶିଶୁ ଶଙ୍କରଙ୍କ ଉଷାଭିଳାଷର ରଚନାପଦ୍ଧତି ଯେ ଅନେକ ପରବର୍ତ୍ତୀ କବିଙ୍କୁ ପ୍ରଭାବିତ କରିଥିଲା ଏଥିରେ ସନ୍ଦେହ ନାହିଁ । ରୀତିଯୁଗର କବିମାନେ କାଳ୍ପନିକ କାବ୍ୟମାନଙ୍କରେ ନାୟକ ନାୟିକାମାନଙ୍କୁ ସାଧାରଣ ମାନବସମାଜରୁ ଗ୍ରହଣ ନ କରି ସେମାନେ ପୂର୍ବଜନ୍ମରେ କୌଣସି ଦେବଦେବୀ ବା ବିଦ୍ୟାଧରବିଦ୍ୟାଧରୀ ଥିବାର କହିଛନ୍ତି । କାହାରି ଅଭିଶାପରୁ ଅବା ସେମାନେ ମର୍ତ୍ତ୍ୟପୁରକୁ ଆସିଥାନ୍ତି । ଶିଶୁ ଶଙ୍କର କାବ୍ୟମଧ୍ୟରେ ଉଲ୍ଲେଖ କରି ନ ଥିଲେ ହେଁ ପୁରାଣରୁ ଜଣାଯାଏ ଯେ ସ୍ୱର୍ଗର ଅପ୍‌ସରା ତିଳୋତ୍ତମା ଦୁର୍ବାସାଙ୍କ ଅଭିଶାପରେ ବାଣାସୁରର କନ୍ୟା

ଉଷାରୂପେ ଜନ୍ମଗ୍ରହଣ କରିଥିଲା । ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ ପୂର୍ବ ଜନ୍ମରେ ପାର୍ବତୀଙ୍କର ମାନସୀକନ୍ୟା ବାଞ୍ଛାବତୀ ଥିଲା । ତାଙ୍କର ରସିକହାରାବଳୀ ହେଉଛି ପୂର୍ବ ଜନ୍ମରେ ଅଭିଶପ୍ତ ଏକ ବିଦ୍ୟାଧରର କନ୍ୟା ଓ ତାଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଅପ୍‌ସରା ରତ୍ନ-ମଞ୍ଜରୀର କନ୍ୟା । ନାୟକନାୟିକାଙ୍କର ମିଳନ ନିମନ୍ତେ ଦୈବୀ ଶକ୍ତିର ଆଶ୍ରୟ ନିଆଯାଇଥାଏ । ଶିଶୁ ଶଙ୍କର ପ୍ରଥମେ ସ୍ୱପ୍ନରେ ଉଷା ଓ ଅନିରୁଦ୍ଧଙ୍କର ମିଳନ ସମ୍ପାଦନ କରି ପରେ ପ୍ରକୃତ ମିଳନ ଘଟାଇଛନ୍ତି । ଲାବଣ୍ୟବତୀ ଓ ଚନ୍ଦ୍ରଭାନୁଙ୍କର ପୂର୍ବ ଅନୁରାଗ ଜନ୍ମିଛି ଇନ୍ଦ୍ରଜାଲିକ ଓ ବୋଇତଆଳଙ୍କ ଦ୍ୱାରା ଓ ପ୍ରଥମ ମିଳନ ହୋଇଛି ଏକ ଯୋଗିନୀ ଚନ୍ଦ୍ରଭାନୁଙ୍କୁ ଲାବଣ୍ୟବତୀର ଅନ୍ତଃପୁରକୁ ନେବାଦ୍ୱାରା ।

ନାୟକନାୟିକାଙ୍କର ମିଳନବିରହର, ସୁଖଦୁଃଖର ଚିତ୍ର ଦେବାପାଇଁ ଶିଶୁ ଶଙ୍କରଙ୍କ ପରି ଅନ୍ୟ କବିମାନେ ମଧ୍ୟ ବିଭିନ୍ନ ଋତୁ, ବନ, ସରୋବର, ପ୍ରାତଃ, ସନ୍ଧ୍ୟା ପ୍ରଭୃତି ବର୍ଣ୍ଣନାର ସାହାଯ୍ୟ ନେଇଛନ୍ତି ।

ଶିଶୁ ଶଙ୍କରଙ୍କ ଉଷା ସ୍ୱପ୍ନଭଙ୍ଗ ପରେ ବିଳାପ କରିଛି—

"ପଲଙ୍କ ତେଜଣ ଉଠିଲା ସୁମୁଖୀ
ସପନ ସଙ୍କେତ ପାଇଣ,
ଆହା ପ୍ରାଣନାଥ କେଣେ ଗଲୁ ବୋଲି
ଉଚ୍ଚ ସ୍ୱରେ କରେ କାରୁଣ,
ଦଇବ, ଦେଖାଇ ନିଧି ହରିନେଲୁ
ଶିଶୁ କୁମାରୀ ମୁଁ କିଛି ନ ଜାଣଇ
କିମ୍ପା ମୋତେ ଏହା କଲୁ ?"

ଉପେନ୍ଦ୍ରଙ୍କ ଲବଣ୍ୟବତୀ ମଧ୍ୟ ପ୍ରିୟ-ଅଦର୍ଶନରେ ଠିକ୍ ସେହି-ପରି ବିଳାପ କରିଅଛି ।

"ଚେତ ଚତୁଷ୍ଟ ଗୃହିଁଲ ନଶିନାଶେ
ପାଶେ ନାହିଁ ଦବ୍ୟ ତରୁଣ
ହୃଦେ ମାରି ହାଥ ନାଥ ନାଥ ବୋଲି
ବିକଳରେ କଲା କାରୁଣ୍ୟ
ଖୋଜେ ଅଧୀରେ,
ଚେତନା ହତ ସେ ବିଧିରେ
ଶେଯ ଲେଉଟାଇ କବରୀ ଫିଟାଇ
କର ଭରି କୁଚଯନ୍ଧରେ ।
ପୁଣି ବୋଇଲ ସେ ଜାଣି ମୁଁ ନ ଥିଲି
ଦଇବ ତୁ ଏଡ଼େ ଦାରୁଣ
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ
ପରଷିଲୁ କେଉଁ କାରଣ
ଭୁଞ୍ଜି ବସିବା
ବେଳେ କୁଳଶ ବୃଷ୍ଟି କଲୁ
ଯେବେ କଲୁ ତେବେ ପରାଣ ନ ନେଲୁ
ଏଡେ କଷଣ କପାଁ ଦେଲୁ ।"

ଏ ଦୁଇ ରଚନାର ସାମଞ୍ଜସ୍ୟ ସହଜେ ଲକ୍ଷ୍ୟ କରାଯାଇ ପାରେ । କେବଳ ଏତିକି ନୁହେଁ । ଏ ପ୍ରକାର ବିଳାପ ଶୁଣି ଉଷାର ସଖୀ ଚିତ୍ରଲେଖା ପଚାରିଛି—'ରବି ପବନ ଅଗମ୍ୟ ଅନ୍ତଃପୁରେ କାହୁଁ ପୁରୁଷ କଲୁ ଆଣି ?'

ଠିକ୍ ସେହିପରି ଲାବଣ୍ୟବତୀରେ ସଖୀ ପଚାରିଛି—'× ×
'ଦିବାକର ଅଗମ୍ୟ ପୁରେ କାହୁଁ ପୁଂସ ପାଇଲୁ ।'

ଏଥିରୁ ସ୍ପଷ୍ଟ ଜଣାଯିବ ଯେ ଉପେନ୍ଦ୍ର ଭଞ୍ଜଙ୍କ ରଚନାକୁ ଶିଶୁ ଶଙ୍କର ଯଥେଷ୍ଟ ପ୍ରଭାବିତ କରିଛନ୍ତି । କିନ୍ତୁ ଉପେନ୍ଦ୍ରଙ୍କ ରଚନାରେ ଶବ୍ଦାଳଙ୍କାରର ଯେଉଁ ବାହୁଲ୍ୟ ଓ ତଜ୍ଜନିତ ଅବୋଧତା ବା କ୍ଲିଷ୍ଟତା ଦେଖାଯାଏ, ତାହା ଶିଶୁ ଶଙ୍କରଙ୍କ ରଚନାରେ ଦୃଷ୍ଟ ହୁଏ ନାହିଁ ।

---

# ଉଷାଭିଳାଷ

## ପ୍ରଥମ ଛାନ୍ଦ

### ରାଗ—ମାଳବ

ଜମ୍ବୁଦ୍ୱୀପ ଉତ୍ତରଖଣ୍ଡ ଶେଷେ
ଦକ୍ଷିଣ ସିନ୍ଧୁ ଉତ୍ତର ପାରୁଶେ ।
ଶ୍ରୀପୁରୁଷୋତ୍ତମ ପବିତ୍ର ଦେଶେ
ନୀଳ ମହୀଧର ନାମ ପ୍ରକାଶେ ।
ଅଶେଷ ବ୍ରହ୍ମାଣ୍ଡ ଭୂରୁହ କନ୍ଦ
ତଥିରେ ବିଜୟ ପରମାନନ୍ଦ ।
ଭଗତ-ଜନ-ଭୃଙ୍ଗ-ଅରବିନ୍ଦ
ସାଧୁଙ୍କ ଲୋଚନ-ଚକୋର-ଚନ୍ଦ୍ର । ୧

---

୧ । ଜମ୍ବୁଦ୍ୱୀପ—ପୁରାଣମତରେ ପୃଥିବୀ ସାତଟି ଦ୍ୱୀପରେ ବିଭକ୍ତ । ଯଥା—ଜମ୍ବୁ, ପ୍ଲକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ ଓ ପୁଷ୍କର । ଭାରତବର୍ଷ ଜମ୍ବୁଦ୍ୱୀପର ଅନ୍ତର୍ଗତ । ଉତ୍ତର ଖଣ୍ଡ—ବିନ୍ଧ୍ୟ ପର୍ବତର ଉତ୍ତରରେ ଥିବା ଭାରତର ଅଂଶ । ଦକ୍ଷିଣାଂଶର ନାମ ଦକ୍ଷିଣାପଥ । (କି ଉତ୍ତରାଖଣ୍ଡ କି ଦକ୍ଷିଣାପଥ; ଭ୍ରମିଲି ମୁଁ ଭାଗ୍ୟବଶେ ଚକ୍ରବର୍ତ୍ତୀ—ଚିଲିକା); ୨ । ନୀଳ ମହୀଧର—ନୀଳ ପର୍ବତ ବା ନୀଳାଚଳ ଧାମ; ଯେଉଁଠାରେ ଜଗନ୍ନାଥ ବିଦ୍ୟମାନ; ୩ । ଭୂରୁହ କନ୍ଦ—ପର୍ବତମାନଙ୍କର ମୂଳ ସ୍ୱରୂପ ଅର୍ଥାତ୍ ଶ୍ରେଷ୍ଠ ପର୍ବତ । ପରମାନନ୍ଦ—ଜଗନ୍ନାଥ ବା ବିଷ୍ଣୁ; ୪ । ଭଗତଜନ-ଭୃଙ୍ଗ-ଅରବିନ୍ଦ—ଭକ୍ତ ରୂପକ ଭ୍ରମରମାନଙ୍କର ପଦ୍ମସ୍ୱରୂପ; ଅର୍ଥାତ୍ ଭ୍ରମରମାନେ ପଦ୍ମକୁ

ନିଗମ-ତତ୍ତ୍ୱସାର ଅଭିରାମ
ଯୋଗି-ଜନଙ୍କର ନିର୍ବାଣ ଧାମ ।
ବିଚିତ୍ର ଚିତ୍ର ନୀଳମଣି ଶ୍ୟାମ
ଅଭିନବ ରୂପ ବଳିତ କାମ ।
ବିଶ୍ୱ ପ୍ରପଞ୍ଚ ଯାର ଖେଡ଼ରସ
ଏକରୁ ଅନେକ ହୋଏ ପ୍ରକାଶ ।
ଅନେକ ଏକ ହୋଅନ୍ତେଣ ଶେଷ
ଏହି ରୂପକୁ ତଲ୍ଲୟେ ଅଭ୍ୟାସ । ୮
ବଚନ ଲୋଚନ ମନକୁ ଦୂର
ଆକାଶ ମତ ମହିମା ଯାହାର ।
କେ ଅବା ଲଭିବ ତହିଁର ପାର
କହିବାକୁ ଯେତେ ବୁଦ୍ଧି ଯାହାର ।

---

ଆଶ୍ରୟ କଲାପରି ଭକ୍ତମାନେ ଯାହାଙ୍କୁ ଆଶ୍ରୟ କରିଥାନ୍ତି । ସାଧୁଙ୍କ...ଚନ୍ଦ୍ର —ଚକୋର ଚନ୍ଦ୍ରଙ୍କର କିରଣ ପାନ କରି ଆନନ୍ଦିତ ହେଲାପରି ସାଧୁମାନଙ୍କ ନେତ୍ର ତାହାଙ୍କୁ ଦର୍ଶନ କରି ଆନନ୍ଦିତ ହୁଏ । ୫ । ନିଗମ ତତ୍ତ୍ୱସାର—ବେଦର ସାରତତ୍ତ୍ୱ ଭଗବାନ; ଅଭିରାମ—ମନୋହର, ସୁନ୍ଦର; ନିର୍ବାଣଧାମ—ମୋକ୍ଷସ୍ଥାନ; ୬ । ବିଚିତ୍ର—ସୁନ୍ଦର; ଚିତ୍ର —ଆଶ୍ଚର୍ଯ୍ୟଜନକ; ନୀଳମଣିଶ୍ୟାମ—ନୀଳମଣି ପରି ବର୍ଣ୍ଣ ବିଶିଷ୍ଟ; ଅଭିନବ—ନୂତନ, ସୁନ୍ଦର; ବଳିତକାମ—ଯେ କାମ ବା କନ୍ଦର୍ପକୁ ସୌନ୍ଦର୍ଯ୍ୟରେ ଜିଣିଛୁ; ୭ । ବିଶ୍ୱ ପ୍ରପଞ୍ଚ—ସଂସାରସମୂହ; ଖେଡ଼—ଲୀଳା; ଏକରୁ ...ପ୍ରକାଶ—ଜଗନ୍ନାଥ ପରମାତ୍ମା; ତାଙ୍କଠାରୁ ସମସ୍ତ ସୃଷ୍ଟି ପ୍ରକାଶିତ; ୮ । ଅନେକ...ଶେଷ—ସମସ୍ତେ ଶେଷରେ ପରମାତ୍ମାରେ ଲୀନ ହୁଅନ୍ତି । ତଲ୍ଲୟେ—ତଲ୍ଲୟ ପୂର୍ବକ ( ତତ୍+ଲୟ ) ତାହାଙ୍କଠାରେ ଲୟ ରଖି; ୯ । ବଚନ...ଦୂର—ଯେ ଅବାଚ୍ୟ, ଅଦୃଶ୍ୟ ଓ ଅଚିନ୍ତନୀୟ । ଆକାଶମତ – ଆକାଶ ପରି ଅନନ୍ତ ଓ ଅସୀମ;

ନିର୍ମଳ ନବଜଳଧର ତନୁ
କଂସ-କେଶୀ-ବକା-ତୃଣା-କୃଶାନୁ ।
ଆଭୀରୀ ଭୀରୁଜନ କାମଧେନୁ
ଯାଦବ-କୁଳ-କମଳର ଭାନୁ । ୧୨
ଶ୍ରୀଗୋପୀନାଥଙ୍କ ବେନି ଚରଣ
ଭବ-ଭୟ-ଜନଙ୍କର ଶରଣ ।
ସକଳ ମଙ୍ଗଳ ମୂଳ କାରଣ
ଶିଶୁଶଙ୍କରର ମନହରଣ ।
ମୁଁ ନିଷ୍ଠୁରମତ ମନ୍ଦ ସୁଜ୍ଜନ
ଭଲ ମନ୍ଦ ବେନି କଷିବା ସ୍ଥାନ ।
ତଥାପି କୃପାଯେ ପୁରୁଷୋତ୍ତମ
ପର ଦୋଷରେ ସେ କ୍ଷମା ବିଧାନ । ୧୬

---

୧୧ । ନବଜଳଧର ତନୁ—ନୂଆ ମେଘପରି ନୀଳ ଶରୀର; କଂସ... କୃଶାନୁ—ଯିଏ କଂସ, କେଶୀ, ବକ ଓ ତୃଣାସୁରଙ୍କୁ ଧ୍ୱଂସ କରିବାରେ ଅଗ୍ନି-ସ୍ୱରୂପ । ଆଭୀରୀ—ଗୋପାଳୁଣୀ; ଭୀରୁଜନ—ରମଣୀ; ଆଭୀରୀ...କାମଧେନୁ—କାମଧେନୁ ଯାଚକର ବାଞ୍ଛା ପୂରଣ କଲାପରି ଯେଉଁ କୃଷ୍ଣ ଗୋପୀମାନଙ୍କର ମନୋବାଞ୍ଛା ପୂରଣ କରିଥିଲେ । ଯାଦବ...ଭାନୁ—ଯାଦବ ବଂଶରୂପକ ପଦ୍ମକୁ ଆନନ୍ଦ ଦେବାରେ ଯିଏ ସୂର୍ଯ୍ୟସ୍ୱରୂପ; ୧୩ । ଶ୍ରୀଗୋପୀନାଥ—ଶ୍ରୀକୃଷ୍ଣ; ଭବଭୟ...ଶରଣ—ଶ୍ରୀକୃଷ୍ଣଙ୍କର ପାଦ ଦୁଇଟି ସଂସାରର ଭୟରେ ତ୍ରସ୍ତ ଲୋକଙ୍କର ଆଶ୍ରୟସ୍ଥଳ; ୧୫ । ନିଷ୍ଠୁରମତ—କଠୋର ହୃଦୟ, ନୀରସ, ସୁଜ୍ଜନ...ସ୍ଥାନ—କଷଟି ପଥରରେ କଷି ସୁନା ଭଲ କି ଖେଳ ଜାଣିହୁଏ; ସେହିପରି ଜ୍ଞାନୀ ଲୋକେ ଭଲମନ୍ଦ ବାରିପାରନ୍ତି;

ସର୍ପ-ସ୍ୱରୂପ ହୋଇଥିବେ ଖଳ ଜନ
ଯତ୍ନ ଦେଇ ତାଙ୍କୁ କ୍ଷୀର ଭୋଜନ ।
ଗରଳ ଛାଡ଼ଇ ସେ କୋପମନ
କର ଖଣ୍ଡନ୍ତେଣ ଦଂଶିତ ଜନ ।
ନିର୍ଗୁଣ ଗୁଣି-ଜନଙ୍କର ପାଶ
ଲଭନ୍ତି ଲଭି ସେ ସ୍ଥାନ ବିଶେଷ ।
ରୂପାକ୍ଷି ସୁନା ହୋଏ ରସ ଯୋଗେ
କାନ୍ତି ଲଭଇ ସେ ଅଗ୍ନି-ସଂଯୋଗେ । ୨୦
ତେଣୁ ମୁଁ ସୁଜନ ପାଦେ କଙ୍କର
ଆଜ୍ଞା ମାଗଇ ଯୋଡ଼ି ବେନି କର ।
ଏଣୁ ଅପ୍ରାଧ ମୋର କ୍ଷମା କର
ବେଷ୍ଟରେ ତୁମ୍ଭେ ଯେ ଦୟାସାଗର ।
ଛନ୍ଦିବି ଛନ୍ଦ ଉଷା-ଅଭିଳାଷ
ରସିକ ଜନଙ୍କ ବିନୋଦ-ବାସ ।
ଶ୍ରୀକୃଷ୍ଣ-ଚରିତ ବିଚିତ୍ର ରସ
ଫୁରୁ ଭାଷାମତେ ମଧୁର ରସ । ୨୪

---

୧୭ । ଗରଳ—ବିଷ; କର—ହାତ । ସର୍ପ ସ୍ୱରୂପ...ଦଂଶିତ ଜନ—ସାପକୁ କ୍ଷୀର ଖୁଆଇଲେ ମଧ୍ୟ ସେ ବିଷ ବାହାର କରେ ଓ ହାତ ହଲାଇଲାମାତ୍ରେ ମନୁଷ୍ୟକୁ ଦଂଶନ କରେ । ଖଳ ଲୋକେ ସେହିପରି ଅନ୍ୟର ଉପକାର ପାଇ ସୁଦ୍ଧା ସେମାନଙ୍କର ଅନିଷ୍ଟ କରିଥାନ୍ତି । ୨୦ । ରସଯୋଗେ—ପାରଦ ପ୍ରଭୃତି ଧାତୁସଙ୍ଗେ ମିଶିବାରୁ; କାନ୍ତି—ତେଜ; ଅଗ୍ନି ସଂଯୋଗେ—ନିଆଁରେ ପଡ଼ିଲେ; ୨୧ । ସୁଜନ—ସାଧୁଲୋକ; କିଙ୍କର—ଚାକର; ୨୨ । ଅପରାଧ, ଦୋଷ; ବେଷ୍ଟରେ—ସ୍ୱଭାବତଃ; ୨୩ । ଛନ୍ଦିବି—ରଚନା କରିବି; ବିନୋଦ ବାସ—ଆନନ୍ଦର ଆଧାର; ୨୪ । ଫୁରୁ—ସ୍ଫୁରୁ, ପ୍ରକାଶ ପାଉ; ମଧୁର ରସ—ଶୃଙ୍ଗାର ରସ;

ଅସୁର ନୃପତି ପ୍ରତାପ ବୀର
ବାଣାସୁର ନାମେ ବଳି-କୁମର ।
ଦୁର୍ଜୟ କଟକ ଶୋଣିତପୁର
ଅଗମିତ ସୁର-ନର-ଅସୁର ।
ଅମରାବତୀ ତାକୁ ନୋହେ ସମ
ବିଶ୍ୱକର୍ମାରେ ସେ ନିର୍ମିତ କମ ।
କାନନ ନନ୍ଦନ ବନୁଁ ଉତ୍ତମ
ଯହିଁ ଷଡ଼ ଋତୁ କରେ ବିଶ୍ରାମ । ୨୮
ଦେବ-କଟକ ସେ ତ୍ରିପୁର ଜିଣି
ବଳେ ସମାନ ସେ କାହିଁ ନ ଗଣି ।
ସ୍ୱର୍ଗେଣ ଅମରରାଜନ ଜିଣି
ମର୍ତ୍ତ୍ୟମଣ୍ଡଳେ ସେ ନୃପ-ଆରେଣି ।
ତାହାର ତପେ ତୋଷ ଉମା ଶିବ
ଆଜ୍ଞା ଦେଲେ ତାକୁ ଦେବାଧିଦେବ ।

---

୨୫ । କୁମର - ପୁଅ । ବାଣାସୁର...ବଳିକୁମର—ବିଷ୍ଣୁଭକ୍ତ ପ୍ରହ୍ଲାଦ ଅସୁରକୁଳରେ ଜନ୍ମିଥିଲେ । ତାଙ୍କର ପୁତ୍ର ବିରୋଚନ ଓ ବିରୋଚନଙ୍କର ପୁତ୍ର ବଳି । ତ୍ରିପାଦ ଭୂମି ମାଗିବା ଛଳରେ ବାମନରୂପୀ ବିଷ୍ଣୁ ବଳିକୁ ପାତାଳକୁ ଚାପିଥିଲେ । ବାଣାସୁର ସେହି ବଳିର ଜ୍ୟେଷ୍ଠ ପୁତ୍ର; ୨୬ । କଟକ—ନଗର, ଦୁର୍ଗ; ଅଗମିତ—ଅଗମ୍ୟ; ସୁର—ଦେବତା । ୨୭ । ଅମରାବତୀ—ଇନ୍ଦ୍ରପୁରୀ, ଦେବତାମାନଙ୍କର ବାସସ୍ଥାନ; କମ—କାରୁକାର୍ଯ୍ୟଯୁକ୍ତ; ୨୮ । କାନନ—ଉପବନ; ନନ୍ଦନ—ଇନ୍ଦ୍ରଙ୍କର ଉଦ୍ୟାନ; ୨୯ । ଦେବ—କଟକ—ସ୍ୱର୍ଗ; ତ୍ରିପୁର—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ; ୩୦ । ସ୍ୱର୍ଗେଣ—ସ୍ୱର୍ଗରେ; ଅମରରାଜନ—ଦେବରାଜ ଇନ୍ଦ୍ରଙ୍କୁ; ନୃପ-ଆରେଣି—(ଅଗ୍ରଣୀ ଶବ୍ଦଜ) ଶ୍ରେଷ୍ଠ; ୩୧ । ଦେବାଧିଦେବ—ମହାଦେବ ।

ଯାବତ ରବି ଶଶୀ ମହୀ ଥିବ
ସହସ୍ରେ ଭୁଜ ତୋହୋର ହୋଇବ । ୩୨
ସନ୍ତୋଷେ ଗଉରୀ ସଙ୍ଗେ ଶଙ୍କର
ପ୍ରତ୍ୟକ୍ଷେ ବଜୟେ ନବରେ ତାର ।
ଏକ ଦିବସେ ବୋଲେ ମହାସୁର
ଶୁଣ ଦେବ ତୁମ୍ଭେ ତ୍ରିପୁର-ହର ।
ସହସ୍ରେ ଭୁଜବଳ ନୋହେ ସଫଳ
ଯୁଦ୍ଧକୁ ତ ମୋତେ ସମାନ ନାହିଁ ।
ତୋର ସମାନ ଜଣେ ଯୋଦ୍ଧା ଦେଇ
ବଳ ଶାନ୍ତ ମୋର କର ଗୋସାଇଁ । ୩୬
ଶୁଣି ପ୍ରକୋପେ ହର ଆଜ୍ଞା ଦେଲେ
ରଥରୁ ତୋହୋର ଧ୍ୱଜ ଖସିଲେ ।
ମୋର ସମାନେ ଜଣେ ତୋର ତୁଲେ
ଯୁଦ୍ଧରେ ତୋତେ ସେ ତୋଷିବ ଭଲେ ।

---

୩୨ । ଯାବତ—ଯେତେ କାଳଯାଏ; ରବି—ସୂର୍ଯ୍ୟ; ଶଶୀ—ଚନ୍ଦ୍ର; ମହୀ—ପୃଥିବୀ; ଭୁଜ—ବାହୁ, ହାତ, ୩୩ । ଗଉରୀ—ପାର୍ବତୀ; ଶଙ୍କର—ମହାଦେବ; ନବର—ରାଜପ୍ରାସାଦ; ୩୪ । ତ୍ରିପୁର-ହର—ଶିବ ( ମୟ-ଦାନବ ସ୍ୱର୍ଣ୍ଣ, ରୌପ୍ୟ ଓ ଲୌହର ତିନୋଟି ପୁର ନିର୍ମାଣ କରିଥିଲା । ମାଳୀ, ସୁମାଳୀ ଓ ବିଦ୍ୟୁନ୍ମାଳୀ ନାମରେ ତାରକାସୁରର ତିନୋଟି ପୁତ୍ର ସେହି ତିନିପୁରର ଅଧିପତି ଥିଲେ । ସେମାନେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ ନାନା ଅତ୍ୟାଚାର କରିବାରୁ ଶିବ ତିନିପୁର ସହିତ ସେମାନଙ୍କୁ ବିନାଶ କରିଥିଲେ । ଏହି ହେତୁରୁ ଶିବ ତ୍ରିପୁରହର ବୋଲି ବର୍ଣ୍ଣିତ ); ୩୭ । ପ୍ରକୋପେ—କ୍ରୋଧରେ; ଧ୍ୱଜ—ବାନା; ପତାକା; ୩୮ । ତୁଲେ—ସଙ୍ଗରେ;

ଶୁଣି ବାହୁନ୍ତେ ଦଇତ୍ୟ ଦଣ୍ଡଧାରୀ
କେତେଦେଁ କାଳ ସେ ଥାଇ ସୁମର ।
ତାହାର ଉଷା ନାମେଣ କୁମାରୀ
ରୂପେଣ ରମ୍ଭା ସେ ନୁହନ୍ତ ସରି । ୪୦
ଆନନ୍ଦକନ୍ଦ ନୀଳଗିରି-ପତି
ଲକ୍ଷ୍ମୀ ସାରଦା ତା ପାର୍ଶ୍ବଣବର୍ତ୍ତୀ ।
ତାହାଙ୍କ ଚରଣେ ଶରଣ ମତି
ଶିଶୁଶଙ୍କର ଭାବୁଥାଇ ନିତି । ୪୧

---

୩୯ । ଦଣ୍ଡଧାରୀ -ରାଜା ; ଦଇତ୍ୟ—ଦୈତ୍ୟ; ୪୦ । ନାମେଣ—ନାମରେ; କୁମାରୀ—କନ୍ୟା; ରୂପେଣ—ରୂପରେ, ଶୋଭାରେ; ରମ୍ଭା—ସ୍ୱର୍ଗର ଅପ୍‌ସରାବିଶେଷ; ୪୧ । ଆନନ୍ଦକନ୍ଦ—ଆନନ୍ଦର ମୂଳ; ନୀଳଗିରିପତି ଜଗନ୍ନାଥ; ସାରଦା—ସରସ୍ୱତୀ; ପାର୍ଶ୍ବଣବର୍ତ୍ତୀ—ପାର୍ଶ୍ବବର୍ତ୍ତୀ, ପାଖରେ ରହିଛନ୍ତି ।

## ଦ୍ୱିତୀୟ ଛାନ୍ଦ

### ବାଣ—କଳସା ଗଉଡ଼ା

ଏଥୁ ଅନନ୍ତରେ ଶୁଣ ରସିକ ସିହାଣ
ବଚନେ କହିବ କେତୁ ଉଷା ରୂପଗୁଣ ।
ଯୁବା-ଜନ-ମନ-ଚୂତ ଚନ୍ଦନ-ସମୀର
ପୁରୁଷ-ହୃଦୟ-ଚନ୍ଦ୍ରମଣି ନିଶାକର ।
ଶରଦ-ସମ୍ପୂର୍ଣ୍ଣ-ଅକଳଙ୍କ-ହରିଣାଙ୍କ
ଲପନ ଲବଣ୍ୟଲକ୍ଷ୍ମୀ ଗୃହିଣି ଆତଙ୍କ ।
ସିଂଚ ଭବ ଗୃହିଣି ସେବନ୍ତି ଯହିଁ ହର
ଆହ୍ଲାଦ ଗୁଣ ହେଣୁ ବଦେ ନିଶାକର । ୪

---

୧ । ସିହାଣ—( ସଜ୍ଞାନ ଶବ୍ଦ ) ଚତୁରା ରସିକ—ରସଗ୍ରହଣକାରୀ; କାବ୍ୟର ରସଗ୍ରହଣରେ ସମର୍ଥ ପାଠକ; ୨ । ଚନ୍ଦନସମୀର—ମଳୟପବନ; ଚୂତ—ଆମ୍ରଗଛ; ଯୁବାଜନ...ଚନ୍ଦନ ସମୀର—ଯୁବାମାନଙ୍କ ମନକୁ ଆମ୍ରଗଛ ସଙ୍ଗେ ତୁଳନା କଲେ ଉଷାର ରୂପଗୁଣ ମଳୟ ସଙ୍ଗେ ତୁଳନୀୟ ହେବ । ମଳୟ ପବନ ବାଜିଲେ ଆମ୍ରଗଛ ଯେପରି ବଉଳ ଧରେ ସେହିପରି ଯୁବାଙ୍କର ମନ ଉଷାର ରୂପଗୁଣରେ ଉଲ୍ଲସିତ ହେଉଥିଲା । ନିଶାକର—ଚନ୍ଦ୍ର । ପୁରୁଷ...ନିଶାକର—ଚନ୍ଦ୍ରକିରଣରେ ଚନ୍ଦ୍ରକାନ୍ତ ମଣି ଯେପରି ତରଳି ଯାଏ, ଉଷାର ରୂପଗୁଣ ଦେଖି ଯୁବକମାନଙ୍କର ମନ ସେହିପରି ତରଳି ଯାଉଥିଲା; ୩ । ଅକଳଙ୍କ—କଳଙ୍କଶୂନ୍ୟ; ହରିଣାଙ୍କ—ଚନ୍ଦ୍ର; ଲପନ—ମୁଖ; ଲବଣ୍ୟ—ଚଳ ଚଳ କାନ୍ତି, (ମୁକ୍ତାଫଳେଷୁ ଛାୟା-ସ୍ତରଳତ୍ୱମିବାନ୍ତର ପ୍ରତିଭାତି ଯଦଙ୍ଗେଷୁ ତଲ୍ଲାବଣ୍ୟମିତି କଥ୍ୟତେ )

ନିର୍ମଳ ସ୍ୱଭାବ ବହେ ମଦନ ଦର୍ପଣ
ଜଳରୁହ ବହେ ତାର ସୁଗନ୍ଧ ଲାବଣ୍ୟ ।
ସୁସଞ୍ଚ ନାସିକା-ପୃଷ୍ଠେ ଲୁଚେ ଗଜମୋତି
ସୁଧାଚନ୍ଦ୍ର ଯେନ କି ପୌର୍ଣ୍ଣମୀ-ନିଶାପତି ।
କାମକୁ ଜୀଆଇବାକୁ ଲୋଡ଼ି ହେମଗିରି
ପନ୍ତୁଁ ସେ କୁଚକୁ ଗୃହେଁ ହେଠମାଥ କରି ।
କୁଟିଳ କୁନ୍ତଳ କି କୋମଳ ଭୃଙ୍ଗରାଜ
କାମରଥ-ଧ୍ୱଜେ ନୀଳ ପତାକା ବିରାଜ । ୮

---

ଆତଙ୍କ — ଭୀତ । ଶରଦ...ଆତଙ୍କ—ଶରତ୍ କାଳରେ ପୂର୍ଣ୍ଣିମା ତିଥିର ଚନ୍ଦ୍ର କଳଙ୍କହୀନ ହୋଇପାରିଲେ ସେ ମଧ୍ୟ ଉଷାର ମୁଖକାନ୍ତିର ଶ୍ରୀ ଦେଖି ଭୀତ ହୁଅନ୍ତା, କାରଣ ଉଷାର ମୁଖର କାନ୍ତି ସହିତ ପୂର୍ଣ୍ଣଚନ୍ଦ୍ରର କାନ୍ତି ଆଦୌ ତୁଳନୀୟ ନୁହେଁ; ୪ । ସ୍ମିତ-ଦରହାସ । ସ୍ମିତ....ନିଶାକର--ଉଷାର ଦରହାସ ଦେଖି ଲଜ୍ଜିତ ହୋଇ ଚନ୍ଦ୍ରଙ୍କ ସେବା କରିବାରୁ ତାର ଆହ୍ଲାଦ ଗୁଣକୁ ପାଇଛି; ୫ । ମଦନ—କନ୍ଦର୍ପ, କାମଦେବ; ନିର୍ମଳ ସ୍ୱଭାବ—ସ୍ୱଚ୍ଛତା; ଜଳରୁହ —ପଦ୍ମ । ନିର୍ମଳ...ଲାବଣ୍ୟ—ତାର ମୁଖର ସ୍ୱଚ୍ଛତାକୁ କାମଦେବର ଦର୍ପଣ ନେଇ ସ୍ୱଚ୍ଛ ହୋଇଛି; ପଦ୍ମ ତାର ସୁଗନ୍ଧ ଓ ଲାବଣ୍ୟ ନେଇଥିବାରୁ ସୁଗନ୍ଧ ଓ କାନ୍ତିମାନ ହୋଇଛି; ୬ । ସୁସଞ୍ଚ—ସୁନ୍ଦର; ନାସିକାପୃଷ୍ଠ—ନାକପୁଡ଼ା; ଗଜମୋତି—ଗଜ ବା ହସ୍ତୀର କୁମ୍ଭରୁ ଜାତ ମୁକ୍ତା; ସୁଧା—ଅମୃତ; ନିଶାପତି—ଚନ୍ଦ୍ର; ୭ । ହେମଗିରି—ମେରୁପର୍ବତ (ସୁବର୍ଣ୍ଣଗିରି); ହେଠମାଥ —ମୁଣ୍ଡ ତଳକୁ କରି । କାମକୁ...କରି—ଏ ପଦଟିର ଦୁଇଟି ଅର୍ଥ ହୋଇ-ପାରେ; ଏକ ଅର୍ଥରେ—ମେରୁ ପର୍ବତ ଉଷାର ଉଚ୍ଚ କୁଚଠାରୁ ଝିଙ୍କ ଓ କାମଭାବ ଜାତ କରାଇବାକୁ ଅକ୍ଷମ । ତେଣୁ ନିଜଠାରେ କାମଭାବ ଜାତ କରାଇବାକୁ ନତମସ୍ତକରେ ସେହି କୁଚକୁ ଗୃହେଁ । ଅନ୍ୟ ଅର୍ଥରେ— ଉଷା ମନରେ କାମଭାବ ଜନ୍ମାଇବା ନିମନ୍ତେ ମସ୍ତକ ନତ କରି ମେରୁପର୍ବତ ସଦୃଶ ନିଜର କୁଚକୁ ଗୃହେଁ; ୮ । କୁନ୍ତଳ—କେଶ;

ଯୁବା-ଜନ-ମନ-ବନ୍ଦୀ-ମନ୍ଦିର କବରୀ
ସେନେହେ ଶଶାଙ୍କ ପାଶେ ଯେସନେ ଶର୍ବରୀ ।
ମଧ୍ୟେ ଶୋହେ ନୀଳଘନ-କୁଟିଳ-ଅଳକା
ମଦନ-ମୁକୁରେ ଗୁରୁ ମରକତ-ରେଖା
ଅଧୋଭାଗେ ଅଧର ବିଦ୍ରୁମ-ରେଖା ଆଭା
ତହୁପରେ ଖଞ୍ଜିତ ମୁକୁତା ଦନ୍ତ ଶୋଭା ।
ଶ୍ରବଣ ଯୁଗଳ ବେନି ପାଶ ଅଭିରାମ
ତ୍ରିଭୁବନ-ଜୟ-ଫାଶ-ଥୋଇଛି କି କାମ ? ୧୨
ପୁନରପି ହରତାପ ଭଙ୍ଗି ତ ଅନଙ୍ଗ
ଭ୍ରୂଲତା ଗୁଣ ସାଜିଲା କପାଳ ଶାରଙ୍ଗ ।
ଲୋଚନ ଅମୋହ ଶର କଜ୍ଜ୍ୱଳ ବିଷାଇ
ତାଟଙ୍କ ଶାଣରେ କି ତା ଘଷୁଛି ବସାଇ ।

---

ଭୃଙ୍ଗରାଜି—ଭ୍ରମରସମୂହ; କୁଟିଳ...ବିରାଜି—ଉଷାର କୁଟିଳ ବାଳ ଶିଖ ଭ୍ରମର ଶ୍ରେଣୀ ପରି । ସେ କେଶ କନ୍ଦର୍ପର ରଥରେ ପତାକା ଉଡ଼ୁଥିବା ନୀଳ ପତାକା ସଦୃଶ । ଧ୍ୱଜ—ପତାକାଦଣ୍ଡ; ୯ । ବନ୍ଦୀ-ମନ୍ଦିର—ବନ୍ଦୀ ରହିବା ଘର; ଶଶାଂକ—ଚନ୍ଦ୍ର; ଶର୍ବରୀ—ରାତ୍ରି; କବରୀ—ଜୁଡ଼ା । ଏଠାରେ ଉଷାମୁଖର ଚନ୍ଦ୍ର ସହିତ ଓ କେଶପାଶର ରାତ୍ରି ସହିତ ତୁଳନା । ୧୦ । ମୁକୁର—ଦର୍ପଣ; ଅଳକା—ଚୂର୍ଣ୍ଣକୁନ୍ତଳ; ଚୂନାଚୂନା ବାଳ ମରକତ—ନୀଳ ମଣିବିଶେଷ; ୧୧ । ଅଧର—ଓଷ୍ଠ; ବିଦ୍ରୁମ—ମୋହନା; ଆଭା—କାନ୍ତି, ଶୋଭା, ୧୨ । ଶ୍ରବଣ...କାମ ?—ଉଷାର କାନ ଦୁଇଟି ଯୋଡ଼ିଏ ସୁନ୍ଦର ଫାଶ ପରି । ସତେ ଅବା କନ୍ଦର୍ପ ତ୍ରିପୁରକୁ ଜିଣିବାପାଇଁ ଏ ଫାଶ ଦୁଇଟି ବସାଇଛି; ୧୩ । ଅନଙ୍ଗ—କନ୍ଦର୍ପ; କାମଦେବ; ପୁନରପି—ଆଉ ଥରେ; ଶାରଙ୍ଗ—ଧନୁ; ୧୪ । ଅମୋହ—ଅମୋଘ; ବିଷାଇ—ବିଷକୁ ବୋଳି; ତାଟଙ୍କ—କାନର ଅଳଙ୍କାର ବିଶେଷ । ଲୋଚନ...ବସାଇ—କନ୍ଦର୍ପ

କମ୍ବୁକଣ୍ଠେ ଥୋଇଲା ସପତ ଆଦ୍ୟସ୍ୱର
କୋକିଳ ଶିଖିଲେ ଏଥୁଁ ସୁସ୍ୱର ଗମ୍ଭୀର ।
ଶମ୍ଭୁ ଦମ୍ଭ ଯିବ; ଗଣ୍ଡ ଚବୁକ ଦେଖିଲେ
ବହୁ ସାମଗ୍ରୀର କାମ, ପୂର୍ବୁଁ ଭସ୍ମ କଲେ । ୧୭
ସୁରୁଚିର ଗଣ୍ଡଯୁଗ ମଦନ ମୁକୁର
ଯୁବାଜନ-ମନ-ବନ୍ଦୀ ଚନ୍ଦ୍ର ତାଟଙ୍କର ।
କଳିତ କୋମଳ ବାହୁଲତା ରତା ପାଣି
ଶିରୀଷମାଳାରେ କୋକନଦ ଯୁଗ୍ମା ଜାଣି ।
ମର୍କତ-ବଳୟ ଛନ୍ଦି ମଧୁକର ମିଳି
ଲେଳିହାତ କର-ପଲ୍ଲବ ସୁପମ ଅଙ୍ଗୁଳି ।

---

ଉଷାର ଚକ୍ଷୁ ରୂପକ ଅମୋଘ ଶରରେ କଜ୍ଜ୍ୱଳ ରୂପକ ବିଷ ବୋଳି ତାକୁ ତୀକ୍ଷ୍ଣ କରିବା ପାଇଁ ତାଟଙ୍କ-ଶାଣେରେ ଘଷୁଛୁ କି; ୧୫ । କମ୍ବୁ—ଶଙ୍ଖ; ସପତ ଆଦ୍ୟ ସ୍ୱର—ସା, ରି, ଗା, ମା, ପା, ଧା, ନି । ମୟୂରର ଷଡ଼ଜ, ବୃଷଭର ଋଷଭ, ଛାଗର ଗାନ୍ଧାର, କ୍ରୌଞ୍ଚର ମଧ୍ୟମ, କୋକିଳର ପଞ୍ଚମ, ଘୋଟକର ଧୈବତ ଓ ହସ୍ତୀର ନିଷାଦ—ଏହି ସାତୋଟି ସ୍ୱରର ପ୍ରଥମ ଅକ୍ଷରରୁ ଯଥାକ୍ରମେ ସାରିଗାମାପାଧାନି ଆସିଛୁ; ୧୬ । ଶମ୍ଭୁ—ଶିବ; ଦମ୍ଭ—ଗର୍ବ; ଗଣ୍ଡ—ଗାଲ; ଚବୁକ—ଓଠ; ସାମଗ୍ରୀର—ସାମଗ୍ରୀ, ଉପକରଣ, ଅସ୍ତ୍ରଶସ୍ତ୍ର । କାମଦେବ ଉଷା'ଶରୀରରେ ନାନା ଅସ୍ତ୍ରଶସ୍ତ୍ର ରଖିଥିବାର ଦେଖି ଶିବ ତା ସଙ୍ଗେ ଯୁଦ୍ଧରେ ହାରିଯିବା ଭୟରେ ଆଗରୁ ତାକୁ ମାରି ପକାଇଲେ; ୧୭ । ସୁରୁଚିର—ଅତି ସୁନ୍ଦର । ଚନ୍ଦ୍ର—ପ୍ରତିବିମ୍ବ, ଉଷାର ଗାଲ ହେଲା କନ୍ଦର୍ପର ଦର୍ପଣ; ସେଥିରେ ତାଟଙ୍କର ପ୍ରତିବିମ୍ବ ପଡ଼ୁଥିଲା । ଏହା ଯୁବାଜନଙ୍କର ମନବନ୍ଦୀ ହେଉଥିଲା; ୧୮ । କଳିତ—ସୁନ୍ଦର; ପାଣି—ହାତ; ରତା—ରକ୍ତବର୍ଣ୍ଣ; କୋକନଦ—ରକ୍ତପଦ୍ମ । ଉଷାର ବାହୁ ହେଲା ଶିରୀଷର ମାଳା; ସେଥିରେ ହାତ ହେଲା ରକ୍ତପଦ୍ମର ଯୁଗ୍ମା-ସଦୃଶ; ୧୯ । ବଳୟ—ହସ୍ତାଲଙ୍କାର; ସୁପମ—ସୁନ୍ଦର;

ବିପୁଳ ସୁଘନ ପାଣ୍ଡୁ ଉଚ୍ଚ କୁଚ ବେନି
ଅନ୍ୟୋଅନ୍ୟେ ବଢ଼ିଲେ ହୃଦୟ ସୀମା ଘେନି । ୨୦
ଅବଶେଷ ନ ରଖିଲେ କିସ ଚିତ୍ର ଏହୁ
ଦେଖିଲା ମାତ୍ରକେ ବୁଦ୍ଧି ସୀମା ହରେ ଯେହୁ ।
ବିଷୟ ଅନ୍ତରେ ମନ ନ ଗମିବା ପାଇଁ
ତେଣୁ କରି ମଧ୍ୟରେ ଅନ୍ତର ରଖିନାହିଁ ।
ମଧ୍ୟା-ସିଂହ ଉପରେ କି ଯଉବନ-କରୀ
ବେଷେ ଉଠି ବେନି କୁମ୍ଭ ଅଛି କି ଉଭାରି ?
କି ଅବା ତ୍ରିପୁରଜୟୁ ମୋହ ରତ୍ନକୋଷ
କନକ କୁମ୍ଭରେ ଭରି ଶମ୍ଭୁରେ ବିଳାସ ? ୨୪

---

୨୦ । ବିପୁଳ—ସ୍ଥୂଳ; ସୁଘନ - ପରସ୍ପର ଲଗିଥିବା; ପାଣ୍ଡୁ—ଶୁକ୍ଳ; ଅନ୍ୟୋଅନ୍ୟ—ଅନ୍ୟୋନ୍ୟ, ପରସ୍ପର; ୨୦-୨୧ । ଉଷାର ସ୍ଥୂଳ, ନିବିଡ଼, ଶୁକ୍ଳ, ଉଚ୍ଚ କୁଚ ଦୁଇଟି ବକ୍ଷସୀମା ଅଧିକାର କରିବାକୁ ଏପରି ବାଦରେ ବଢ଼ିଲେ ଯେ ଦୁହିଁଙ୍କ ମଧ୍ୟରେ ଅନ୍ତର ରହିଲା ନାହିଁ; ଏଥିରେ କିଛି ଆଶ୍ଚର୍ଯ୍ୟ ନାହିଁ । ଏହାକୁ ଦେଖିଲେ ବୁଦ୍ଧି ହଜିଯାଏ; ୨୨ । ବିଷୟ ଅନ୍ତରେ—ଅନ୍ୟ ବିଷୟରେ; ଅନ୍ତର—ଫାଙ୍କ; ୨୩ । ମଧ୍ୟା—ମଧ୍ୟଭାଗ, ଉଭାରି ଅଛି—ଉଭା କରାଇଛି । ଉଷାର ମଧ୍ୟଭାଗ (କଟି) ହେଲା ସିଂହ; ଯୌବନ ହେଲା ହସ୍ତୀ; କୁଚ ଦୁଇଟି ହେଲା କୁମ୍ଭ; ୨୪ । ଶମ୍ଭୁ—ଶିବ । ଉଷାର କୁଚକୁ ଦେଖି କବି ତର୍କଣା କରୁଛନ୍ତି—ତ୍ରିପୁରାସୁରଙ୍କୁ ଜୟ କରି ଶିବ ଯେଉଁ ରତ୍ନରାଶି ପାଇଥିଲେ ତାହାକୁ ସୁନାର କଳସରେ ଭରି ବିଳାସ କରୁଅଛନ୍ତି କି ? ଅଥବା ତ୍ରିଭୁବନ (ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ)କୁ ମୋହ କରିବା ହେଲା ରତ୍ନକୋଷ; ଉଷା ତାହାକୁ ସ୍ୱର୍ଣ୍ଣକୁମ୍ଭରେ ଭରିଛି । ନିଜର କୁଚରୂପକ ସେହି ସ୍ୱର୍ଣ୍ଣକଳସରେ ଉଷା ବିଳାସ କରୁଛି କି ?

କସ୍ତୁରୀ-ପଙ୍କରେ ସ୍ତନ ମରକତ ମୁଦ
ଗୁପତେ ବସନ ବାସ ଅଛି କି ଆଚ୍ଛାଦ ?
କୃଶୋଦରୀ ନିମ୍ନନାଭି କାମ ମୋହ ଟୋପ
ଯୁବାଜନ ବନ୍ଧନେ ତ୍ରିବଳି ରଜ୍ଜୁରୂପ
ଅନଙ୍ଗ ଦହନକାଳେ ସୁଧାରସ ଢାଳ
ଧୂମଲତା ବାହାର ହୋଇଲା ରୋମାବଳୀ ।
ନିତମ୍ବ ମଦନରାଜ୍ୟ ଜୟସିଂହାସନ
ପ୍ରଭା ଚର୍ମଦେଶେ କି ଏ ଛବେକ ନାଶନ । ୨୮
ବିପରୀତ କନକ କଦଳୀ ନିନ୍ଦେ ଜାନୁ
ଯାହା ଆଶ୍ରେ କରି ବଶ୍ୟ କରିଲା ଅତନୁ ।
ହରି ହର ଧାତା ଆଦି ପଡ଼ିଲେ ଲୋଚନେ
ଯୁଗ ଯୁଗାନ୍ତରେ ଲୟ ନ ଛାଡ଼ିବେ ମନେ ।

---

୨୫ । କସ୍ତୁରୀ ଲେପରେ ସ୍ତନର ଅଗ୍ରଭାଗରେ ମରକତ ମୁଦ ପରି ଚିହ୍ନିତ ହୋଇଥିଲା । ସତେ ଅବା ଉଷା ବସନ ବସ୍ତ୍ରରେ ସ୍ତନାଗ୍ରକୁ ଗୋପନରେ ଢାଙ୍କିଥିଲା; ୨୬ । କୃଶୋଦରୀ—କୃଶୋଦରୀ, କ୍ଷୀଣ ଉଦର ଯାହାର; ଟୋପ—ଗର୍ତ୍ତ; ତ୍ରିବଳି—ପେଟରେ ଥିବା ତିନୋଟି ବଳି; ଉଷାର ନାଭି ହେଲା କନ୍ଦର୍ପର ମୋହ ରୂପକ ଗର୍ତ୍ତ; ଯୁବାମାନଙ୍କୁ ବାନ୍ଧିବା ପାଇଁ ତ୍ରିବଳି ହେଲା ରଜ୍ଜୁପରି । ୨୭ । ଶିବ କନ୍ଦର୍ପକୁ ପୋଡ଼ିଦେଇ ତା ଉପରେ ଅମୃତ ଜଳ ଢାଳିବାରୁ ଯେଉଁ ଧୂଆଁ ଉଠିଲା ତାହା (ଉଷାର) ରୋମାବଳୀ ହୋଇଲା କି ? (ପ୍ରତୀୟମାନୋତ୍ପ୍ରେକ୍ଷା); ୨୮ । ନିତମ୍ବ—କଟିର ପଶ୍ଚାଦ୍ଭାଗ, ମଦନରାଜ୍ୟ—କନ୍ଦର୍ପରାଜା; ଚର୍ମଦେଶ—ପୃଷ୍ଠଭାଗ; ପ୍ରଭା—ମଣ୍ଡଳାକାର ଜ୍ୟୋତି; ୨୯ । ଜାନୁ—ଜଙ୍ଘ; ବିପରୀତ କନକକଦଳୀ—ସୁନାରେ ତିଆରି ଓଲଟ କଦଳୀଗଛ; ଅତନୁ—କନ୍ଦର୍ପ; ୩୦ । ହରି-ବିଷ୍ଣୁ, ହର—ଶିବ ; ଧାତା—ବ୍ରହ୍ମା;

ସ୍ଫୁଟ-ସରସିଜ-ଶୋଭା ନିନ୍ଦିତ ଚରଣ
ସୁସଜ୍ଜ ଅଙ୍ଗୁଳି-ନଖ ଦିବ୍ୟ ମଣିଗଣ ।
ରସାଣିଲା ଜମ୍ବୁନଦ ଝଳ ଦେହ ରୂପ
ଗଣ୍ଡି ଶିବ୍ର ନ ଦିଶଇ କାମ ମୋହ ଚୋପ । ୩୨
ଗନ୍ଧର୍ବ କିନ୍ନର ଯକ୍ଷ ଉତ୍ତମ ନାୟିକା
ଦାସୀପଣେ ନ ଛୁଡ଼ଇ ରାମା ରୂପରେଖା ।
ବଚନ କହିଲା ଯାହା ଗୀତକର୍ମ ଯେନ
ଯେହାନ୍ତୁଁ କୋଟିଏ ଗୁଣ ଅଧିକ କାମିନୀ ।
ବାଣାଘରେ ଏହା ଲୋଭେ ରହିଲେ କି ହର
ସପତଣୀଭୟେ ସଙ୍ଗେ ଉମା ପରିଚ୍ଚର ।
ସୁରପୁରେ ଦୁର୍ଲ୍ଲଭ ଯେ ବାସ ଆଭରଣ
ଏହାକୁ ସୁଲଭ ସେହୁ ଅମୂଲ୍ୟ ଭୂଷଣ । ୩୬
ସହସ୍ର ଯୁବତୀ ନିତ୍ୟେ ସେବେ ମନ ଜାଣି
ଚନ୍ଦ୍ରଶାଳାପୁରେ ନାନା ବିନୋଦ ତରୁଣୀ ।

---

୩୧ । ସରସିଜ—ପଦ୍ମ; ଅଙ୍ଗୁଳି ନଖ ଦିବ୍ୟ ମଣିଗଣ—ଆଙ୍ଗୁଠିରେ ଥିବା ନଖଗୁଡ଼ିକ ସୁନ୍ଦର ମଣିପରି; ୩୨ । ଜମ୍ବୁନଦ—ସୁନା; ଝଳ—କାନ୍ତି, ଜ୍ୟୋତି; ରସାଣିଲା—ଉଜ୍ଜ୍ୱଳ କରାଯାଇଥିବା ଉଷାର ଦେହ ଓ ରୂପରେ ଉଜ୍ଜ୍ୱଳ କରାଯାଇଥିବା ସୁନାର ଜ୍ୟୋତି ଥିଲା । ୩୩ । ରାମା ରୂପରେଖା—ଯୁବତୀ (ଉଷାର) ରୂପସୌନ୍ଦର୍ଯ୍ୟ; ୩୪ । ଗୀତକର୍ମ ଯେନ—ଗୀତ ରଚନା ଉଦ୍ଦେଶ୍ୟରେ; କାମିନୀ—ଯୁବତୀ ଉଷା । ୩୫ । ପରିଚ୍ଚର—ଦାସୀ । ଉଷାକୁ ଲୋଭ କରି ଶିବ ବାଣାସୁର ଘରେ ରହିଲେ କି ? ଶିବ ଉଷାକୁ ଗ୍ରହଣ କଲେ ସେ ପାର୍ବତୀଙ୍କର ସଉତୁଣୀ ହେବ । ଏହି ଆଶଙ୍କାରେ ପାର୍ବତୀ ଦାସୀପରି ଶିବଙ୍କ ପାଖେ ରହିଲେ; ୩୬ । ବାସ—ବସ୍ତ୍ର, ଆଭରଣ—ଅଲଙ୍କାର;

ନୃତ୍ୟ ଗୀତ ବାଦ୍ୟ କାବ୍ୟରସରେ କୁଶଳ
ବିବିଧ ବିଳାସ ରସେ ବଞ୍ଚଇ ସେ କାଳ ।
ଅସିତ ଲାବଣ୍ୟ ଘନ ଶୋଭା ଗୋପୀନାଥ
କୋଟି କାମ-ନିନ୍ଦିତ ମୋହନ ବେଣୁହସ୍ତ ।
ବନମାଳୀ ଶରଣ ଶଙ୍କର କହେ ରସ
ବେନି ଛାନ୍ଦ ଶେଷ ହୋଏ ଉଷା-ଅଭିଳାଷ ।

---

୩୭ । ଚନ୍ଦ୍ରଶାଳାପୁର—ପ୍ରାସାଦର ଉପରେ ଥିବା ଘର ; ବିନୋଦ ତରୁଣୀ—କ୍ରୀଡ଼ାକୌତୁକରେ ରତ ଯୁବତୀ; ୩୯ । ଅସିତ—କୃଷ୍ଣ ବର୍ଣ୍ଣ; କାମନନ୍ଦିତ—କାମଦେବଙ୍କୁ ଶୋଭାରେ ନିନ୍ଦୁଥିବା ।

# ତୃତୀୟ ଛାନ୍ଦ

ବାଣୀ—ମଙ୍ଗଳ ଧନାଶ୍ରୀ

କୁସୁମ ସମୟକାଳେ ଅବଳାମଣି
ପୁଷ୍ପଭେଦ ପାଇଲେ ଯେ ରସିକା ରମଣୀ ।
ମଦନ ବିଜୟ ତାର ହୃଦୟଦେଶେ
ଅଙ୍ଗଶୋଭା ଯେସନ କାନନ ମଧୁମାସେ ।
ମନକୁ ଭେଦଇ ତାର ବିଳାସ ରସ
ସଧୀରେ କହନ୍ତେ ନାସା ଫୁଲ ମନ୍ଦହାସ ।
ତରଳ କୁଟିଳ ଭଙ୍ଗେ ଲୋଚନ ତାଳ
ପବନ କଂପିତ କି ଏ ପୁଷ୍ପେ ଭୃଙ୍ଗମାଳ । ୪
ମନ-କରିବର ତାର ହୋଇଲେ ମତ୍ତ
ସଧୀରେ ଗମନ ହୋଏ ଲୋଚନ ଘୂର୍ମିତ ।
ସାହିତ୍ୟ ପଢ଼ଇ କୂଟେ ସଖୀଙ୍କ ମେଳେ
ଉତ୍ସୁକ ହୁଅଇ ଶୁଣି ରତିରସ ଖେଳେ ।

---

୧ । କୁସୁମ ସମୟକାଳେ—ବସନ୍ତ ଋତୁରେ; ପୁଷ୍ପଭେଦ ପାଇଲା—ରଜୋବତୀ ହେଲା; ୨ । ମଧୁମାସ—ବସନ୍ତ ସମୟ; ୪ । ଉଷା ଚଞ୍ଚଳ ଆଖିରେ ବକ୍ର ଦୃଷ୍ଟି ପକାଇଲା ବେଳେ ମନେହୁଏ ସତେ ଅବା ଫୁଲ ଉପରେ ବସିଥିବା ଭ୍ରମରମାନେ ପବନ ଯୋଗେ କମ୍ପୁଛନ୍ତି; ୫ । ମନ-କରିବର—ମନରୂପକ ଶ୍ରେଷ୍ଠ ହାତୀ; ଘୂର୍ମିତ—ଅଳସଯୁକ୍ତ; ୬ । ସାହିତ୍ୟ—କାବ୍ୟ, କୂଟେ—କପଟରେ, ଛଳନା କରି;

ସମ୍ଭାଳି ନ ପାରି ମନ ଉଛଳି ହୋଇ
ପଶୁରିଲେ ବଞ୍ଚାଇ ମନରେ ଲାଜ ପାଇ ।
ଶିଶୁ ଖେଳ଼ରସେ ତାର ନ ରସେ ମତି
ଭୂଷଣେ ଭୂଷିତ ରତି-ଲଳସେ ଯୁବତୀ । ୮
କୁମ୍ଭାଣ୍ଡ ନାମେଣ ମନ୍ତ୍ରୀ, ଦୁହିତା ତାର
ଚିତ୍ରଲେଖା ନାମ ତାର ମହିମା ଅପାର ।
ଜାଣଇ ସକଳ ଶାସ୍ତ୍ର ଯୋଗିନୀ ମତ
ବିଶ୍ୱାସ ପୀରତି ଯେ ଉଷାକୁ ଉପଗତ ।
ହାସରସ କଉତୁକେ ହରଇ ମତି
ଏକଦିନ ତାର ସଙ୍ଗେ ସୁବେଶ ଯୁବତୀ ।
ଉପବନେ ପରବେଶ ରମଣୀମଣି
ମନସିଜ ରଥବର ଶୋଭା ତାର ଜାଣି । ୧୨
ବେଭରେ ବସନ୍ତଋତୁ ମଧୁସମୟେ
ଦେଖିଲା ଅବୋଧ ବାଳା ବନ ରସୋଦୟେ ।
ପୁଷ୍ପ ମକରନ୍ଦ ଗନ୍ଧେ ମନ୍ଦ ମରୁତ
ଜମାଇ ଲୋଚନ ମନ କିଶଳୟ ମତ ।
ତରୁଲତା ମଳୟଜ ସଙ୍କେତ ପାଇ
କୁସୁମ କୋରକ ସ୍ନେହେ ପ୍ରକଟିଲେ ତନ୍ବୀ ।

---

୧୦ । ଯୋଗିନୀ—ଯେଉଁ ସ୍ତ୍ରୀ ଯୋଗବଳରେ ଅଦ୍ଭୁତ କାର୍ଯ୍ୟ କରି ପାରନ୍ତି; ଯୋଗିନୀମତ—ଯୋଗିନୀ ସଦୃଶ । ଉଷାକୁ ଉପଗତ—ଉଷା ପାଖରେ ରହୁଥିଲା; ୧୨ । ମନସିଜ—କନ୍ଦର୍ପ, କାମଦେବ । ରଥବର—ରଥ; ୧୩ । ଅବୋଧ—ଅଜ୍ଞାନ; ରସୋଦୟେ—ରସର ଆଗମ କାଳରେ; ୧୪ । ମକରନ୍ଦ—ମଧୁ, ପୁଷ୍ପରସ; ମନ୍ଦ ମରୁତ—ଧୀର ପବନ; କିଶଳୟମତ—କୋମଳ ପତ୍ର ପରି; ୧୫ । ମଳୟଜ—ମଳୟ ପର୍ବତର ବହୁଥିବା ଦକ୍ଷିଣ ପବନ; କୋରକ—କଢ଼ି; ପ୍ରକଟିଲେ—ପ୍ରକାଶ କଲେ ;

ଗ

ବିକାଶି ବାସନ୍ତୀ-ମଧ୍ୟ ସେମନ୍ତ ବନେ
ଚୁମ୍ବନ ଲଳସେ ମିଳେ ଛୁଆଅନା ପାଶେ । ୧୬
ନଆଳୀ ଲଳିତ ବାହୁ ନିବିଡ଼ କୋଳେ
ପୁଲକିତ ଚୂତ କି ଏ ମଞ୍ଜରୀ ମୁକୁଳେ ।
କାମ ଅର୍ଦ୍ଧଚନ୍ଦ୍ର ବାଣ ପାଟଳୀ କି ସେ
ଦେଖନ୍ତା ତନୁ ବିଦାରି ସୁରଙ୍ଗ ପ୍ରକାଶେ ।
ଯେବଣି କେତକୀ ନାମ ମାନବକେ ମୋହ୍ନି
କାମ କୁନ୍ତମତ ନକେ ତା ଦେଖି ପାରୁ ପନ୍ଥ ।
ମଧୁପ ମଲ୍ଲୀ ଉପରେ ମଧୁର ବାଣୀ
ମଦନ ବିଜୟ କାଳେ ଶଙ୍ଖନାଦ ଜାଣି । ୨୦
ବିବିଧ କୁସୁମଚୟ ବିକାଶ ଦେଖି
ଭ୍ରସଳ ପ୍ରାଣୁକ ଚକ୍ଷୁ ନ ପାରେ ଉପେକ୍ଷି ।
ମଳୟ ଶଦ୍ୱଳ ମତ ଶୋଭେ ସେ ବନ
ଅଶୋକ କରଇ ଶୋକ ବିଯୋଗୀର ମନ ।
ଚେତ ଚେତ ଜନେ ଲୁହ୍ନିଁ ଚୂତ ମୁକୁଳ
ଯୁବାଜନେ ଡାକି କି ଏ ଭାଷଇ କୋକିଳ ।

---

୧୬ । ବାସନ୍ତୀ--ମାଧବୀ ବା ନଆଳୀ ଫୁଲ; ୧୭ । ମଞ୍ଜରୀ ମୁକୁଳ—ପଲ୍ଲବାଙ୍କୁର ଓ କଢ଼; ଚୂତ—ଆମ୍ବ; ୧୮ । ପାଟଳୀ—ରକ୍ତବର୍ଣ୍ଣର ପୁଷ୍ପବିଶେଷ; ଦେଖନ୍ତା— ଦେଖଣାହାରୀ; ତନୁ—ଶରୀର; ୧୯ । କୁନ୍ତ—ତୀକ୍ଷ୍ଣାଗ୍ର ଅସ୍ତ୍ରବିଶେଷ; ୨୦ । ମଧୁପ—ଭ୍ରମର; ୨୧ । କୁସୁମଚୟ—ଫୁଲସମୂହ; ବିକାଶ—ଫୁଟିବା; ଭ୍ରସଳ—ଭ୍ରମର; ୨୨ । ଶଦ୍ୱଳ— ଶଇଳ, ପର୍ବତ । ଅଶୋକ ...ମନ— ଅଶୋକ ଫୁଲ ବିରହୀର ମନରେ ଶୋକ ଜାତ କରାଏ; ୨୩ । ଚୂତମୁକୁଳ—ଆମ୍ବ ବଉଳ ;

ଚନ୍ଦନ ତରୁକୁ ବେଢ଼ି ଲବଙ୍ଗ-ଲତା
କଣଳୟ ରଙ୍ଗେ କ ସେ ହୋଏ ଉନ୍ମତ୍ତା । ୨୪
କନକବେଦିକା ତହିଁ ରତନ ଶୋଭା
ରମଣୀ ରତନ ଉଷା ତହିଁ ହୋଏ ଉଭା ।
ଗୃହିଁଙ୍କ ଦୀର୍ଘିକା ତଟେ ସ୍ଫଟିକ ଖଞ୍ଜେ
ଜମ୍ବୁନଦ-ସୋପାନରେ ମାଣିକ୍ୟ ରଙ୍ଗ ରାଜେ ।
ମାନସରୋବର ତେଜି ମରାଳମାନ
କ୍ରୀଡ଼ା କରୁଛନ୍ତି ତହିଁ ମାତନ୍ତେ ମଦନ ।
ଉଠନ୍ତି ବୁଡ଼ନ୍ତି ତହିଁ ତରଙ୍ଗ ଭଙ୍ଗେ
ଚକ୍ରବାକ ରତି ରସ ଚକ୍ରବାକୀ ସଙ୍ଗେ । ୨୮
ପିକ-ମୂକ ହତ ଯେଣୁ ଝଙ୍କାରେ ତରୁ
ଯୁବାଜନ ଅନୁରାଗ କେ କହି ତ ପାରୁ ।
ଅକଳଙ୍କ-କଳାନିଧି-ବଦନୀ ବାଳା
ବନ ଦେଖି ପୀଡ଼ିଲା ମଦନ ଶରଜାଳା ।
ନାଗେଶ୍ବର କଢ଼ି କାମ-ହାବୋଡ଼ ବାଜେ
ପୁଣି ଭୃଙ୍ଗ-ଗୁଞ୍ଜେ ଚୂତ-ମୁକୁଳ-ନାରାଜେ ।

---

୨୪ । କଣଳୟ—କୋମଳ ପତ୍ର । ଉନ୍ମତ୍ତା—ଉନ୍ମତ୍ତ; ୨୫ । କନକ ବେଦିକା—ସୁନାରେ ତିଆରି ବେଦି; ରତନ ଶୋଭା—ରତ୍ନଦ୍ୱାରା ସଜ୍ଜିତ; ୨୬ । ଦୀର୍ଘିକା—ପୁଷ୍କରିଣୀ; ସ୍ଫଟିକ—ଶୁକ୍ଳବର୍ଣ୍ଣର ପ୍ରସ୍ତରବିଶେଷ; ଜମ୍ବୁନଦ—ସୁନା; ୨୭ । ମରାଳମାନ—ହଂସସବୁ; ୨୮ । ଚକ୍ରବାକ ଚକ୍ରବାକୀ—ଚକୁଆଚକୋଇ; ୨୯ । ପିକ-ମୂକ ହତ—କୋକିଳର ମୌନଭାବ ଗୁଳିଗଲା; ସେ ରାବିଲା, ଅନୁରାଗ--ପ୍ରେମ; ୩୦ । ଅକଳଙ୍କ-କଳାନିଧିବଦନୀ—କଳଙ୍କ ନ ଥିବା ଚନ୍ଦ୍ର ପରି ଯାହାର ମୁଖ ସୁନ୍ଦର;

କୋକିଳ ବଚନେ ତାହା ବିଷାଇ ଡାମ
ଭେଦନ୍ତେ ସୁନ୍ଦରୀ ହିଆ କର୍ଣ୍ଣି ହୋଏ ଝାମ । ୩୨
ଚଞ୍ଚଳ କୁରଙ୍ଗୀ କି ସେ ଇଙ୍ଗିତ-ଶରେ
କର୍ଣ୍ଣିଲା- କରଭ-ଉରୁ ମଦନ କାତରେ ।
ଅଧର ଶୁଖିଲା ତାର ପୁଲକେ ଗଣ୍ଡ
ରୁନ୍ଧିଲା କୋକିଳ ବାଣୀ ଜାଡ଼ି ବାହେ ତୁଣ୍ଡ ।
ଗମନ ଶ୍ରମ କପଟେ ଅଳସେ ବସେ
କୋଳେ ଧରି ଚିତ୍ରଲେଖା କହଇ ବିଶ୍ୱାସେ ।
ପମ୍ପର ସେଚନ ପୁଷ୍ପ ବିଞ୍ଜଣି ବାସ୍ତେ
କୁରୁବେଲ୍ଲି-ଭ୍ରମର ମଧୁରେ କେ ଚକାଏ । ୩୬
ଉଠିଲା ସୁମୁଖୀ ଧରି ସଜନୀ କର
ସହି ନ ପାରିଲା ଯେଣୁ ମଦନ-ବିଧୁର ।
ନିଜ ପୁରେ ମିଳି ବୋଲେ, ସଜନି ! ଶୁଣ
ତୋଠାପୁରେ ଥୋଅ ଏ ପଞ୍ଜୁରୀ ପିକଗଣ ।

---

୩୧ । ହାବୋଡ—ଏକ ପ୍ରକାର ବାଣ । ନାରାଜ—ନାରାଚ, ଶର; ଆମ୍ରବଉଳ ହେଲା କନ୍ଦର୍ପର ଶର, ଭଅଁରମାନେ ହେଲେ ଧନୁର ଗୁଣ; ୩୨ । ବିଷାଇ—ବିଷ ବୋଳି; ସୁନ୍ଦରୀ ହିଆ—ସୁନ୍ଦରୀ ଉଷାର ହୃଦୟ; ଝାମ—ଝଡ଼ିଗଲା; ୩୩ । କରଭ—ହାତର ମଣିବନ୍ଧଠାରୁ କାଣୀ ଆଙ୍ଗୁଠି ପର୍ଯ୍ୟନ୍ତ ଅଂଶ, ଉଷାର ଉରୁ (ଜଙ୍ଘ) ସେହିପରି ହୋଇଥିବାରୁ ସେ କରଭୋରୁ ; ୩୪ । ଗଣ୍ଡ ପୁଲକେ—କପୋଳଦେଶ କଣ୍ଟକିତ ହେଲା । ଜାଡ଼ି ବାହେ—କଥା ବାହାରିଲା ନାହିଁ; ୩୫ । ଗମନ ଶ୍ରମକପଟେ—ଚାଲିବା ହେତୁ କ୍ଲାନ୍ତ ହୋଇଥିବା ଛଳନା କରି; ୩୬ । ପମ୍ପର—ସୁବାସିତ ଜଳ; ପୁଷ୍ପବିଞ୍ଚଣି ବାସ୍ତେ—ଫୁଲର ବିଞ୍ଚଣା ପବନ; କୁରୁବେଲ୍ଲି ଭ୍ରମର—କୁରୁବେଲ୍ଲି ଫୁଲର ଭଅଁର; ୩୭ । ମଦନ ବିଧୁର—କନ୍ଦର୍ପର ପୀଡ଼ା; ୩୮ । ହିମକର—ଚନ୍ଦ୍ର;

ନୀଳବାସେ ଆଚ୍ଛାଦ ମୋ ସଉଧବାସ
ହିମକର କିରଣ ଏ କରଇ ପ୍ରକାଶ ।
କିସ ବିପରୀତ ସଖି ! କରିବି କିସ
ପ୍ର ରୁବ ପୀଡ଼ିତ ଏବେ ହୋଇଲି ତ ବିଷ । ୪୦
ପଲଙ୍କେ ଶୁତିଲି ବାମା ଏତେକ କହି
ଉନ୍ନିଦ୍ରେ ରଜନୀ ନେଲି ଚେତନା ହରାଇ ।
ନିଶି ଶେଷ ଚକ୍ରବାକୀ ଆନନ୍ଦ ଶୁଣି
ଇଷିତ ବିକାଶ ହୋଏ ଜଳେଣ ନଳିନୀ ।
ନିଶା ଗମେ ଶଶୀ ଯେହ୍ନ ଚରମ-ଗିରି
କୁମୁଦ ମୁଦ୍ରିତ ଚୂହ୍ନି ଆକୁଳ ଚକୋରୀ ।
ଅଭିସାରୀ ନିନ୍ଦା କରେ କୁକ୍କୁଟ ବାଣୀ
ପରବାସୀ ରମଣୀ ଅବଧି ରେଖା ଗଣି । ୪୪

---

ସଉଧବାସ—ଚୂନବୋଳା ଘର । ବିରହିଣୀ ପକ୍ଷରେ ଚନ୍ଦ୍ରକିରଣ ପୀଡ଼ାଦାୟକ । ଚୂନବୋଳା ଘର ଚନ୍ଦ୍ରକିରଣ ପଡ଼ି ଧଳା ହୋଇଥିବାରୁ ତାକୁ ନୀଳ ବସ୍ତ୍ରରେ ଢାଙ୍କିବାକୁ କହିଲେ; ୪୧ । ଶୁତିଲି—ଶୋଇଲି; ବାମା—ଯୁବତୀ (ଉଷା); ଉନ୍ନିଦ୍ରେ—ଚେଇଁରହି; ୪୨ । ରାତିରେ ଚକୁଆଚକୋଇଙ୍କର ବିଚ୍ଛେଦ ହୁଏ, ଦିନରେ ମିଳନ ହୁଏ । ତେଣୁ ରାତି ଶେଷ ହେବାରୁ ଚକୋରର ଆନନ୍ଦ ହେଲା । ଇଷିତ—ଈଷତ୍, ଅଳ୍ପ; ବିକାଶ ହୁଏ—ଫୁଟେ; ଜଳେଣ—ଜଳରେ; ନଳିନୀ—ପଦ୍ମ; ୪୩ । ନିଶା ଶଶୀକୁ ଯେହ୍ନ ଚରମ ଗିରିକୁ ଗମିଲେ—ରାତି ଚନ୍ଦ୍ରଙ୍କୁ ଯେହ୍ନ ଅସ୍ତାଚଳକୁ ଗଲେ । କୁମୁଦ...ଚକୋରୀ—କଇଁଫୁଲ ମୁଦି ହୋଇ-ଯିବାର ଦେଖି ଚକୋରୀ ଜାଣିଲା ଯେ ଚନ୍ଦ୍ର ଅସ୍ତ ହେଲେଣି । ତେଣୁ ତାର ମନ ଆକୁଳ ହେଲା; କାରଣ ସେ ଆଉ ଚନ୍ଦ୍ରକିରଣ ପାନ କରିବାକୁ ପାଇବ ନାହିଁ; ୪୪ । ଅଭିସାରୀ—ଯେଉଁ ରମଣୀ ପ୍ରିୟ ସହିତ ମିଳିବା ପାଇଁ ସଙ୍କେତ

ବିଯୋଗୀ ଧ୍ୟାନ ସଂଯୋଗେ ପୂହାଇ ନିଶି
ନଗମେ ବସିଲ୍ଲ କରେ ଚନ୍ଦପଟ ମଷୀ ।
ରଜନୀ-ଉନ୍ନିଦ୍ର କାମୀ ଶୟନ କରେ
ପରଅଙ୍ଗ ସୁବୋଧିଲ୍ଲ ଶୟନ ଅନ୍ତରେ ।
ସୁରତ ସଙ୍କେତ କାନ୍ତ ହୃଦରେ ଦେଖି
ଖଣ୍ଡିତା ଯୁବତୀ ରୋଷ ଦୋଷ ଉପଲକ୍ଷି ।
ପଦ୍ମିନୀ କମ୍ପଇ ବାତେ ଭ୍ରମର ଗୃହୀଁ
କୁମୁଦିନୀ ସଙ୍ଗ କ ଏ ପ୍ରକୋପ ସେ ହୋଇ । ୪୮
ପ୍ରାଚୀ ଅନୁରାଗୀ ହୋଏ ରବିକ ଦେଖି
ଅଭିସାରୀ ନିଶି କ ସେ ମାନକୁ ଉପେକ୍ଷି ।
ପ୍ରଦୀପ ଖାଣ୍ଡ଼ର ପ୍ରାଚୀ ସୁରଙ୍ଗ ଦିଶେ
ନାନା ପକ୍ଷୀ କୋଳାହଳ ଉଚେ ପିକ ଘୋଷେ ।

---

ସ୍ଥଳକୁ ଯାଏ, ଅବଧି—କଣ୍ଟ (ସୀମା); ଅଭିସାରୀ...ରଣି—କୁକୁଡ଼ାର ରାବରୁ ରାତ ପାହିବା ଜାଣି ଅଭିସାରିକାମାନେ ତାକୁ ନିନ୍ଦା କଲେ । ଯେଉଁ ରମଣୀର ସ୍ୱାମୀ ବିଦେଶ ଯାଇଥାଏ; ସେ ରାତ ଗଣି ସ୍ୱାମୀ ଫେରିବା ପାଇଁ ଦେଇଥିବା କଣ୍ଟ ଦିନକୁ ଅପେକ୍ଷା କରେ; ୪୫ । ବିଯୋଗୀ—ବିଯୋଗିନୀ, ବିରହିଣୀ; ବିରହିଣୀ ନାହିଁ ସ୍ୱାମୀଙ୍କ ଚିନ୍ତା କରି କରି ରାତ କଟାଇଲା; ନଗମେ—ନବେଳାରେ; ଚନ୍ଦପଟ—ଚନ୍ଦ କରିବା ପାଇଁ କନା; ମଷୀ—କାଳି; ୪୬ । କାମୀ—କାମିନୀ । ସୁବୋଧିଲା—ଚିନ୍ତା କଲା; ୪୭ । ସୁରତ ସଙ୍କେତ —ରମଣଚହ୍ନ; ଖଣ୍ଡିତା—ଯେଉଁ ନାୟିକା ପତିଅଙ୍ଗରେ ଅନ୍ୟ ନାରୀ ସହିତ ସମ୍ଭୋଗର ଚହ୍ନ ଦେଖି ରୋଷ କରେ; ୪୮ । ପଦ୍ମିନୀ...ସେ ହୋଇ । ସକାଳେ ଭ୍ରମର ପଦ୍ମିନୀ ପାଖକୁ ଆସିଲ । ପଦ୍ମିନୀ ପବନରେ କମ୍ପୁଥିଲ । କବି ଉତ୍ପ୍ରେକ୍ଷା କରୁଛନ୍ତି—ଭ୍ରମର ରାତରେ

ସଧୀର ପବନ ଆସେ କୁସୁମବନୁ
ପଲଙ୍କୁ ଉତୁର ଉଷା ଉଲ୍ଲସିତ ତନୁ ।
ବନମାଳୀ କଳାନିଧି-ବଦନ ଧ୍ୟାନେ
ତିନି ଛାନ୍ଦ ଶେଷ ଶିଶୁଶଙ୍କର ବଖାଣେ । ୫୨

---

କୁମୁଦନୀ ପାଖରେ ରହୁଥିବାରୁ ପଦ୍ମିନୀ କୋପରେ କମ୍ପୁଛି କି ?
୪୯ । ପ୍ରାଚୀ—ପୂର୍ବ ଦିଗ; ଅନୁରାଗୀ—ସ୍ନେହପ୍ରବଣ; ୫୧-୫୨ । କୁସୁମବନ—ଫୁଲବଗିଚ୍ଚ; ଉତୁର—ଓହ୍ଲାଇ; କଳାନିଧି-ବଦନ—ଚନ୍ଦ୍ରମୁଖ ।

## ଚତୁର୍ଥ ଛାନ୍ଦ

ଦଶ – ମଙ୍ଗଳ ଗୁଜ୍ଜରୀ ।

(ସଙ୍ଗମ ଡଆଣ ବାଣୀରେ ଗାଇବ)

ଅରୁଣ ଉଦୟ ହୋଏ ରଜନୀ ଶେଷେ
ବିୟୋଗୀ ଜନଙ୍କୁ କି ଏ କାମ-ହୁତାଶେ ।
ହିମକର ତାପେ ଯେହ୍ନେ ବିୟୋଗୀ ଅଙ୍ଗ
ସେ କାହିଁ ସମ୍ଭବ ରବି ଉଦୟ ସଙ୍ଗ ।
ମଦନ ବାଉଳା ଉଷା ନବ ବିରହୀ
ଗତ ଅନୁଭବ ନାହିଁ, ନ ପାରେ ସହି ।
ମଦନ-ଅନଳ ସହୁଁ ଅନ୍ତରେ ଜଳେ
ଉଲ୍ଲୋଳ ମନ୍ଦ ମଳୟ ସମୀରେ ଲୁଳେ । ୪

---

୧ । ଅରୁଣ---ବାଳସୂର୍ଯ୍ୟ; ବିୟୋଗୀଜନ—ବିରହୀ ବିରହିଣୀ; କାମ-ହୁତାଶ—କନ୍ଦର୍ପର ଅଗ୍ନି; ସକାଳର ସୂର୍ଯ୍ୟ ବିରହୀ ବିରହିଣୀଙ୍କୁ ପୋଡ଼ିବା ପାଇଁ କନ୍ଦର୍ପର ନିଆଁ କି ? ୨ । ହିମକର – ଚନ୍ଦ୍ର; ତାପେ—ତାପିତ କରେ; ୪ । ଉଲ୍ଲୋଳ—ବହୁଥିବା, ଗତିଶୀଳ; ଲୁଳେ—ଲେଉଟିଯାଏ, ଗଡ଼େ; ୫ । କୋକିଳ...ସନ୍ତପ୍ତେ । ଉଷାର ହୃଦୟରେ କାମାନଳ ଜଳୁଥିଲା । ଅଗ୍ନିରେ ଘୃତ ଢାଳିଲେ; ତୃଣ ପକାଇଲେ ତାହା ଅଧିକ ପ୍ରଜ୍ୱଳିତ ହୁଏ, କୋକିଳର ରାବ, ଭ୍ରମରର ଗୁଞ୍ଜନ ଘିଅ ପରି ଓ ଶୀତଳ ଉପଚାର ତୃଣ ପରି ହେଲା; ଅର୍ଥାତ୍ କୋକିଳର ରାବ, ଭ୍ରମରର ଗୁଣୁଗୁଣୁ ଶବ୍ଦ, ଚନ୍ଦନଲେପ, ପଦ୍ମପତ୍ର

କୋକିଳ ଭୃଙ୍ଗ ବଚନ ଘୃତ ପରସେ
ଶୀତ ଉପଚାର ତଥି ତୃଣ ସଞ୍ଚସେ ।
କ୍ଷଣେ କମ୍ପେ କ୍ଷଣେ ସ୍ୱେଦ ଟାଙ୍କୋରେ ଲୋମ
ବିଷମ ବିଳାସ ରସ ଯେସନେ ଯମ ।
ଝୁରି ଝୁରି କ୍ଷୀଣ ତନୁ ଲାବଣ୍ୟ ଶେଷ
ତେଜିଲା ଭୋଜନ ନିଦ୍ରା ବିବିଧ ରସ ।
ଝୀନ ବାସ ବିଷ ସମ ନ ବନ୍ଧେ ହାର
ରତ୍ନମୟ ପୁର ମଣେ ମଦନ-କାର । ୮
ଦିବସ ନିମିଷ ଯୁଗ, ଅଶେଷ ନିଶି
ଏକାନ୍ତ ଠାବରେ ରାମା ଝୁରଇ ବସି ।
ଏକମାତ୍ର ଚିତ୍ରଲେଖା କଡରେ ଥାଇ
ଗୁପତ ବେଦନା ତାର ନ ଜାଣେ କେହି ।
ଏମନ୍ତ ପ୍ରକାରେ ଗଲା କେତେକ ଦିନ
ଝିଙ୍କାରି ଶବଦେ ବହେ ଝଞ୍ଜା ପବନ ।
ପ୍ରଚଣ୍ଡ ଚଣ୍ଡ-କିରଣ ଗଗନେ ଘୋଟେ
ବନଜନ୍ତୁ ଲୁଚେ କୁଞ୍ଜ ବାନୀର ତଟେ । ୧୨

---

ଶଯ୍ୟା ପ୍ରଭୃତି ଶୀତକାରକ ଦ୍ରବ୍ୟ ତାହାର କାମାଗ୍ନିକୁ ଆହୁରି ପ୍ରଜ୍ୱଳିତ କଲେ; ୬ । ସ୍ୱେଦ—ଝାଳ; ୭ । ଲାବଣ୍ୟ—ସୌନ୍ଦର୍ଯ୍ୟ, କାନ୍ତି; ୮ । ଝୀନ-ବାସ—ପତଳା ଶାଢ଼ୀ; ହାର—ହାର; ରତ୍ନମୟ—ରତ୍ନପରିପୂର୍ଣ୍ଣ; ମଦନକାର—କନ୍ଦର୍ପର ବନ୍ଦୀଶାଳା; ୯ । ନିମିଷ—ପଲକ ମୁହୂର୍ତ୍ତ; ୧୦ । ଚିତ୍ରଲେଖା—ଉଷାଙ୍କ ସହଚରୀ, ମନ୍ତ୍ରୀ କୁମ୍ଭାଣ୍ଡଙ୍କ କନ୍ୟା, କଡରେ—ପାଖରେ; ୧୨ । ଚଣ୍ଡକିରଣ—ସୂର୍ଯ୍ୟ, ବାନୀର—ବେତସଲତା;

ଚନ୍ଦନ ଭୂଷିତ ଦେଖି ଯୁବତୀ କୁଚେ
ନଗମ ଦେଖିଣ ଚକ୍ରବ ମଦନ ଲୁଚେ ।
ରବି ଯେହ୍ନେ ମେଘେ ଥାଇ ଶୁଖାଇ ସର
ବିରହୀ ହୃଦୟ ଦହେ ତେସନେ ମାର ।
ନଣି ଅବଲମ୍ବ ହୋଏ ସକଳ ଜନେ
ଚିର ବିରହିଣୀ ଯେହ୍ନେ କାନ୍ତଦର୍ଶନେ ।
ବିପିନ-ଅନଳ ଗିରିଶିଖରେ ଦିଶେ
ବିଯୋଗୀ ହୃଦୟ ଦହେ କାମ-ହୁତାଶେ । ୧୬
କରୀନ୍ଦ୍ରଗମନା ରାମା ନରେନ୍ଦ୍ରସୁତା
ଲୋତକଜଳେ ବଢ଼ାଇ ବିରହ-ଲତା ।
ନିତ୍ୟକର୍ମ ପାସୋରିଲା କମଳମୁଖୀ
ଉତ୍ସୁକ ସ୍ନେବେଣ ଦିନେ ଗୃହ ଉପେକ୍ଷି ।
ଉପବନ ସରୋବର ସନ୍ନିଧେ ମିଳ
ଉମା ଶିବ କରେ ଚକ୍ରବ ସଲିଳ କେଳି ।
ଦେବୀମାନେ ଧରିଛନ୍ତି କୁସୁମ-ଛତ୍ର
କୁସୁମ ଆଲଟ ଧରି କେହୁ ବିଞ୍ଚନ୍ତି । ୨୦

---

୧୩ । ନଗମ—ନଡ଼ୋଲା ସ୍ଥଳ; ୧୪ । ରବି....ମାର—ସୂର୍ଯ୍ୟ ଦୂରରେ ମେଘରେ ଥାଇ ପୋଖରୀର ପାଣି ଶୁଖାଇ ଦେଲା ପରି କନ୍ଦର୍ପ ଉଷାଙ୍କ ଚନ୍ଦନ ଲେପିତ କୁଚ ମଧ୍ୟରେ ଲୁଚି ରହି ହୃଦୟକୁ ଦହିଲା; ୧୫ । ଅବଲମ୍ବନ—ଆଶ୍ରୟ; କାନ୍ତ—ସ୍ୱାମୀ; ୧୬ । ବିପିନ ଅନଳ—ବନାଗ୍ନି; ୧୭ । କରୀନ୍ଦ୍ରଗମନା—ଗଜଗମନା; ନରେନ୍ଦ୍ରସୁତା—ରାଜକନ୍ୟା ଉଷା; ୧୮ । ଉପେକ୍ଷି—ତ୍ୟାଗକରି; ୧୯ । ଉମା...କେଳି —ଶିବପାର୍ବତୀଙ୍କ ଜଳକ୍ରୀଡ଼ା କରାଇଲା; ୨୦ । ଦେବୀମାନେ—ପାର୍ବତୀଙ୍କ ସହଚରୀମାନେ;

ପରବାଷ୍ପ ଦେଖ କେତୁ ଆରେନ୍ଦ୍ର ନାବ
ଚନ୍ଦନ ପିଚକା ମାରି କରନ୍ତି ଖବ ।
ପଡ଼ିଁଶ କମଳ ଛୋଳ କୂଳକୁ ଫିଙ୍ଗେ
ତରଳ ତରଙ୍ଗ ଭଙ୍ଗେ ଲୋଚନ ରଙ୍ଗେ ।
ମଧୁମଦ ପାନେ ମତ୍ତ ହେମନ୍ତ ବାଳୀ
ଅରୁଣ କଟାକ୍ଷ ଶମ୍ଭୁ ଉପରେ ଢାଳି ।
ପ୍ରତ୍ୟକ୍ଷେ ପ୍ରକାଶ କରିଅଛି ଅନଙ୍ଗ
ଘୂର୍ମିତ ଇଷିତ ହାସ ଲୋଚନ ଭଙ୍ଗ । ୧୪
ସଲିଳ ସେଚନ ଶାନ୍ତ ଅରୁଣ ତାପ
ଅନ୍ତରେ ଅଧିକ ହୋୟେ କାମ ସନ୍ତାପ ।
ଦେଖିଣ ଚକିତ ଉଷା ବସୁର ମନେ
ଧିକ ଧିକ ଯଉବନ କାନ୍ତ ବହୁନେ ।
ସ୍ନିଗ୍ଧ ଜନ୍ମ ମନ୍ଦ ଏହୁ ବହ୍ନିଲ ଧାରା
ତରୁଣ ସମୟେ ଦେଲ୍ଲ ବରଦ ଶନ୍ତା ।
ଦେହରୁ ଜନମି ଶପ୍ତ ଉରଜ ବେଳ
ମେଦନ ରହଇ ତହିଁ ମନକୁ ଘେନ । ୧୮
ହେନ ଅବବେକ ଯାହାଁ ସଦନ କରେ
ବରଦ ସମୟେ ତହିଁ ବଶିଖ ମାରେ ।

---

୧୧ । ପରବାଷ୍ପ—ଦାସୀ; ଆରେନ୍ଦ୍ର—ରତି; ୧୩ । ମଧୁମଦ ପାନେ—ମଧୁରୂପକ ମଦ ପିଇ; ହେମନ୍ତବାଳୀ—ହିମାଳୟ କନ୍ୟା ପାର୍ବତୀ; ଶମ୍ଭୁ—ଶିବ । ଅରୁଣ କଟାକ୍ଷ—ରକ୍ତିମ ଦୃଷ୍ଟିପାତ; ୧୪ । ଅନଙ୍ଗ—କନ୍ଦର୍ପ; ଘୂର୍ମିତ—ଘୂରୁଥିବା; ୧୭ । ତରୁଣ ସମୟ—ଯୌବନକାଳ; ୧୮ । ଉରଜ—ସ୍ତନ; ଶପୁ—ଶଙ୍ଖ, ୧୯ । ହେନ—ଏପରି; ଅବବେକ—ବସ୍ତ୍ରରନ୍ଧନ; ବଶିଖ—ଶର;

ପୁଣି ବୋଲେ ମନ୍ଦଭାଗୀ ମୁହିଁ ସେ ଏକା
ପତିସଙ୍ଗ ଲଭି ନାହିଁ କହିଁ ନାୟିକା ।
ତରଳ ଲୋଚନ ତାର ଜାଣିଲେ ଉମା
ମଧୁର ସଧୀରେ ଭାଷେ ଶଙ୍କରବାମା ।
ବଲ୍ଲଭ ପାଇବୁ ଯାହା ଦେଖିବୁ ସ୍ୱପ୍ନେ
ବଇଶାଖ ଶୁକ୍ଳ ତ୍ରୟୋଦଶୀର ଦିନେ । ୩୨
ଶୁଣିଣ ହରଷ ହଂସଗମନା ଆଶେ
ସନ୍ନିଧେ ମିଳିଲା ଯେହ୍ନେ ଶଶୀ ଆକାଶେ ।
ଅବଧି ସଙ୍କେତ ଦିନ ମନରେ ଗୁଣି
ପ୍ରବେଶ ସମୟ ଜାଣି ନିମିଷ ଗଣି ।
ଉଠଇ ବସଇ ବାମା ବାହାରେ ଗୃହେଁ
ହରଷ ବିଷାଦ ମନ ସ୍ୱପନେ ରହେ ।
ଏଥୁ ଅନନ୍ତରେ ହୋଏ ଦିବସ ଶେଷ
ଲୋହିତ ଅମର-ପୁର ସକଳ ଦିଶ । ୩୬
ଲୁଚିଲା ପାଟଳୀ ନବ ପଲ୍ଲବ-ଶୋଭା
ମାଣିକ୍ୟ ସଯୋଗେ ଯେହ୍ନେ ଯୋଏନା ଆଭା ।

---

୩୦ । ନାୟିକା—ରମଣୀ; ୩୧ । ଶଙ୍କରବାମା—ଶିବଙ୍କ ପତ୍ନୀ ପାର୍ବତୀ । ଉମା—ପାର୍ବତୀଙ୍କର ଅନ୍ୟ ନାମ; ୩୨ । ବଲ୍ଲଭ—ପତି; ୩୩ । ଶୁଣିଣ....ଆକାଶେ—ଆକାଶର ଚନ୍ଦ୍ରଙ୍କୁ ପାଖରେ ପାଇଲା ପରି ସ୍ୱାମୀ ପାଇବା ଆଶାରେ ଉଷା ଆନନ୍ଦିତ ହେଲା; ୩୪ । ଅବଧି ସଙ୍କେତ ଦିନ—କଣ୍ଟ ଦେଇଥିବା ଦିନ; ୩୫ । ଅମରପୁର—ଆକାଶ; ଦିଶ—ଦିଗ; ୩୬ । ପାଟଳୀ ନବପଲ୍ଲବ ଶୋଭା—ପାଟଳୀ ଗଛର ନୂଆ ପତ୍ରର ଶୋଭା;

କମଳ ମୁଦ୍ରିତ ଗୃହିଁ ଭ୍ରମର ଖେଦ
ଗଦଗଦ ଚକ୍ରବାକ ପୁଣି ବିଚ୍ଛେଦ ।
ମାନ ଯେବନ୍ତେ ଅନୁରାଗ ଲତାକୁ ଘୋଟେ
ନିଶି ଅନ୍ଧକାର ଘୋର ସୁରଙ୍ଗ ତୁଟେ ।
ସଙ୍କେତ ସଦନେ କାମୀ ଆତୁରେ ଯାଏ
ପାଖେ ଅଭିସାରୀ ଅନ୍ଧକାରେ ନ ଦିଶେ । ୪୦
ସନ୍ନିଧେ ମଧୁପ ଅଛି ଦିଶଇ ନାହିଁ
ମଲ୍ଲିକା କାନ୍ଦଇ ମକରନ୍ଦ ଚକାଇ ।
ଏସନ ସମୟେ ଇନ୍ଦୁ ପଙ୍କିଳ ଆଭା
ପ୍ରିୟା କୁଚ କୁଙ୍କୁମେ କି ଭୂଷିତ ଶୋଭା ।
ରଜନୀ ନିବିଡ ମାନ-ଅନ୍ଧାର-କାଳି
ଦେଖି ନିଶାନାଥ ତାକୁ କିରଣ ଢାଳି ।
ଦିନକର କରେ ତାପ କୁମୁଦ ଗୃହିଁ
ଆଲିଙ୍ଗନ କରେ କି ସେ କର ବଢ଼ାଇ । ୪୪

---

୩୭ । ପୋଏଲା ଆଭା—ପୋହଳର କାନ୍ତି; ୩୮ । ସନ୍ଧ୍ୟା ହେବାରୁ ପଦ୍ମ ବୁଜି ହୋଇଗଲା । ତେଣୁ ଭ୍ରମରର ଦୁଃଖ ହେଲା । ଚକ୍ରବାକର ବିଚ୍ଛେଦ ହେତୁ ଦୁଃଖ ହେଲା; ୩୯ । ମାନ ଅନୁରାଗକୁ ଘୋଡାଇ ଦେଲା ପରି ରାତିର ଅନ୍ଧାର ସନ୍ଧ୍ୟାର ରଙ୍ଗିମାକୁ ଘୋଡାଇ ଦେଲା; ୪୦ । ସଦନ ଘର—ଅଭିସାରିକା ପଥରେ ଦେଖା ନ ଯିବା ପାଇଁ କୃଷ୍ଣ ଶାଢୀ ଆଦି ପିନ୍ଧି ଯାଇଥିବାରୁ ସଙ୍କେତ ଗୃହରେ ପାଖରେ ଥିଲେ ହେଁ ତାକୁ ଅନ୍ଧାରରେ ଦେଖି ନ ପାରି ନାୟକ ଆତୁର ହେଲା; ୪୨ । ଇନ୍ଦୁ ପଙ୍କିଳ ଆଭା—ଚନ୍ଦ୍ରଙ୍କର ଈଷତ୍ ଲାଲ କାନ୍ତି ବା ଶୋଭା—ସେ ନାରୀର ସ୍ତନ ଉପରେ କୁଙ୍କୁମ ପରି ଶୋଭା ଧାରଣ କଲା; ୪୩ । ରଜନୀ ହେଲା ମାନବତୀ ନାୟିକା, ତାର ଅଭିମାନ ଦୂର କରିବା ପାଇଁ ଚନ୍ଦ୍ର ତା ଉପରେ କିରଣ ଢାଳିଲେ; ୪୪ । କର—ହସ୍ତ, କିରଣ;

ଚନ୍ଦ୍ରଶାଳା ପୁରେ ଲୁଚେ ଚନ୍ଦ୍ରକରଣ
ଅନ୍ଧକାର ଲୁଚେ ଘନ ତମାଳବନ ।
କାମର ସଙ୍ଘାତ ଯହୁଁ ଉଦଧି-ସୁତ
ସେହେଁ କୋକଳକୁଳ କଲା ଉଦ୍ଧତ ।
ଏମନ୍ତ ପ୍ରକାରେ ଗଲା ପ୍ରହରେ ନିଶି
ପଲଙ୍କେ ଶୁତିଲା ଯାଇଁ କୁଟିଳକେଶୀ ।
ଚିରକାଳେ ନିଦ୍ରା ହୋଏସୁ ନୟନେ ତାର
ସପନେ ସଙ୍ଗତ ହୋଏସୁ କାମ-କୁମର । ୪୮
ଯେସନେ ରମିଲା ତାକୁ ରମଣୀମଣି
ଅନିରୁଦ୍ଧ ତେସନେ ରମିଲା ତରୁଣୀ ।
ସ୍ୱରୂପ ବସ୍ତୁର କଣ୍ଠେ କରନ୍ତେ କୋଳ
ନିଶି ଶେଷ ନିଦ୍ରାଗତ ବରହେ ଭୋଳ ।
ଆଭୀର-କାମିନୀ-କୁଚ-ମଣ୍ଡଳ କର
ପ୍ରପନ୍ନ ଜନମାନଙ୍କ ଦୁରିତହର ।
ଗୋପୀନାଥ-ପଦ-ନବନୀରଜ ଶିରେ
ଉଷା-ଅଭିଳାଷ କହେ ଶିଶୁଶଙ୍କରେ । ୫୨

---

୪୫ । ଚନ୍ଦ୍ରଶାଳା—କୋଠା ଉପରେ ଥିବା ଘର; ୪୬ । ସଙ୍ଘାତ—ମିଳନ; ଉଦଧିସୁତ—ଚନ୍ଦ୍ର; ୪୮ । ଚିରକାଳେ—ବହୁ ସମୟ ପରେ । କାମକୁମର—ଅନିରୁଦ୍ଧ; ୫୧ । ଆଭୀରକାମିନୀକୁଚ-ମଣ୍ଡଳକର—ଗୋପରମଣୀମାନଙ୍କ କୁଚରେ ଯାହାଙ୍କର ହସ୍ତ ନ୍ୟସ୍ତ; ପ୍ରପନ୍ନ ଜନ—ଆଶ୍ରିତ ଲୋକ; ଦୁରିତହର—ପାପଖଣ୍ଡନକାରୀ; ୫୨ । ନବନୀରଜ—ସଜ ପଦ୍ମଫୁଲ ।

# ପଞ୍ଚମ ଛାନ୍ଦ

ରାଗ—ଆହାରୀ

ପଲଙ୍କ ତେଜିଣ ଉଠିଲା ସୁମୁଖୀ ସପନ ସଂକେତ ପାଇଣ
ଆହା ! ପ୍ରାଣନାଥ, କେଣେ ଗଲୁ ବୋଲି ଉଚ୍ଚସ୍ୱରେ କରେ କାରୁଣ,
ଦଇବ ! ଦେଖାଇ ନିଧି ହରିନେଲୁ ;
ଶିଶୁକୁମାରୀ ମୁଁ କିଛି ନ ଜାଣଇ କମ୍ପାଳ ମୋତେ ଏହା କଲୁ ?
ସପନେ ଅଙ୍ଗସଙ୍ଗ ଲଭି ଅଙ୍ଗନା ସ୍ମରନ୍ତେ ବାତୁଳ ବଚନ,
ରତିଲାଳସେ ଅଳସଭର ତନୁ ତରଳ ଚକିତ ଲୋଚନ,
ହେ ନାଥ ! ଏହିକ୍ଷଣି ଥିଲ ପଲଙ୍କେ,
କିନା ଅପରାଧେ କକେ ଛାଡ଼ିଗଲ କାମିନୀ ମରଣ ନଶଙ୍କେ ।
ଛନଛନ ମନ ବାତୁଳ ବଚନ ନିରେଖି ଚାହେଁ ଦଶ ଦିଶ,
ଦଣ୍ଡକେ ଲେଉଟି ଲାଜ ପ୍ରକାଶିଲା ହେଠ ବଦନେ ଖର ଶ୍ୱାସ
ତାହାକୁ ଉଠି ପଚାରେ ଶଶିଲେଖୀ,
କିସ ବିପରୀତ କହ ଗୋ ! ତୁରିତ କେବଳ ଚନ୍ଦ ପ୍ରାଣସଖି !
ଅବୋଧ ବାଳା ତୁ, ନାହିଁ ବିଶ୍ୱ ହେତୁ, ବଲ୍ଲଭ ଗୁଣେ କି କେ ଦୁଖୀ
ମଧୁପାନ ଆଶେ ଚମ୍ପକ ବିକାଶେ କଞ୍ଜେ ମଧୁପ ମିଳେ ସଖି

---

୧ । ନିଧି—କୁବେରଙ୍କ ସମ୍ପତ୍ତିବିଶେଷ, ଏହା ପଦ୍ମ, ମହାପଦ୍ମ, ଶଙ୍ଖ, ମକର, କଚ୍ଛପ, ମୁକୁନ୍ଦ, କୁନ୍ଦ, ନୀଳ ଓ ଖର୍ବ (ମତାନ୍ତରେ ବର୍ଚ୍ଚ) ଏହି ନଅ ପ୍ରକାର; ୨ । ଅଙ୍ଗନା—ନାରୀ; କକେ—କାହିଁକି. କାମିନୀ ମରଣ ନଶଙ୍କେ—ସ୍ତ୍ରୀର ମୃତ୍ୟୁକୁ ଭୟ ନ କରି; ୩ । ହେଠ ବଦନେ—ମୁହଁ

(ଆହେ)ସଙ୍ଗାତ, ସ୍ୱରୂପ କହ ମୋରେ ବାଣୀ,
ରବି ପବନ ଅଗମ୍ୟ ଅନ୍ତଃପୁରେ କାହୁଁ ପୁରୁଷ କଲୁ ଆଣି । ୪
ସଖୀବାଣୀ ଶୁଣି ନିଦ୍ରାଭାବ ଗୁଣି ପୁଲକେ କୁଚ ଗଣ୍ଡ ଜାନୁ,
ନବ ଅନୁଭବେ କାତର ଅଧର ଆଘ୍ରାଣି ଝମ ଝମ ତନୁ ।
ଚତୁରୀ, (ଚାର) ଚମକ ଉଠେ ଅଙ୍ଗ ଭଙ୍ଗ;
ଅତି ଅଳକତେ ଭୂମିରେ ଶୁତିଲା, ଶିଥିଳ କେଶବାସ ଅଙ୍ଗ ।
ମୁଖେ ବାର ସିଞ୍ଚ ଧୀରେ ଧୀରେ ବଞ୍ଚ ଚିତ୍ରଲେଖା ମୁଖ ବିରସ,
ବାବୁ ଦଇବ କେବଣ ବିପରୀତ ବରଷା କଲୁ ମଧୁମାସ ।
(ଆଗୋ) ସଙ୍ଗାତ ! ମୋହ ମେଘ ତୋତେ ରୁନ୍ଧିଲା
ଲୋଚନମାର କୁଚରେ ବରଷନ୍ତେ କୋକିଳ ବଚନ ବାଧିଲା ।
ମଳିନ ଅଧର ଜମ୍ବୁର ଆକାର କମ୍ପିତ କୁଚ କେମା ନୃତ୍ୟ,
ଶୋକ-ସାଗରେ ମନ-ନଦୀ ମିଶିଲା, ଚେତନା ଚଞ୍ଚଳ ତଡିତ;
(ଆଗୋ) ସଙ୍ଗାତ ! କହ ମଧୁର ମୃଦୁରସ ।
ସଚେତ ହୋଇ ଶରଦ-ଚନ୍ଦ୍ରାନନୀ ଲାଜ ଫେଡୋଟେ ହସ ହସ ।

---

ତଳକୁ ପୋତ; ତୁରିତ—ଶୀଘ୍ର; ଚିତ୍ର—ଆଶ୍ଚର୍ଯ୍ୟ; ୫ । ନିଦ୍ରାଭାବ ଗୁଣି—ଶୋଇଥିବାବେଳେ ସ୍ୱପ୍ନଗତ ବିଷୟ ଚିନ୍ତା କରି; ଶିଥିଳ—ଶିଥିଳ ହେଲା; ବାସ—ଶାଢ଼ୀ; ୬ । ମଧୁମାସ—ବସନ୍ତ କାଳରେ; ମୋହ ମେଘ—ମୋହ ରୂପକ ମେଘ; ରୁନ୍ଧିଲା—ଘୋଟିଲା, ଲୋଚନ...ବରଷନ୍ତେ—ମୋହ ରୂପକ ମେଘ କୁଚ ଉପରେ ଚକ୍ଷୁର ଲୋତକ ରୂପକ ଜଳନ୍ତୁ ବର୍ଷା କରିବାରୁ ; ବାଧିଲା—ବନ୍ଦ ହୋଇଗଲା, ବର୍ଷାକାଳରେ କୋଇଲି ରବେ ବାହିଁ; ୭ । ଜମ୍ବୁ—ଜାମୁକୋଳି, ବର୍ଷାକାଳରେ ଜାମୁକୋଳି ପାଚେ, ମୟୂର ନୃତ୍ୟ କରେ, ନଦୀ ସମୁଦ୍ରରେ ମିଶିଯାଏ, ବିଜୁଳି ମାରେ । ଏଠାରେ ଉଷାର ଅଧର ହେଲା ଜାମୁକୋଳି, କୁଚର କମ୍ପନ ହେଲା ମୟୂର

କହି ମନେ କଲେ ଲାଜ ନିବାରଇ ଉତ୍ସୁକ କରେ ମନୋରଥ,
ଜାଡ଼ି ବାନ୍ଧି ତୁଣ୍ଡ ବଚନ ଭୁଲଇ ସପନେ ମନ ତଦଗତ ।
(ଆଗୋ) ସଙ୍ଗାତ ! ନବ-ଜଳଦକାନ୍ତି ଶ୍ୟାମ,
ସପନେ ମୋତେ ହଡ଼ମ୍ପଣ କଲା ଯେ ରୂପେ ନ ଗଣ୍ଠେ କୋଟିକାମ । ୮
କହୁ କହୁ ତାର ତରଳ ଲୋଚନୁ ବହେ କଜ୍ଜ୍ୱଳ ଜଳଧାର,
ଚିତ୍ରଲେଖା ବୋଲେ ଚିତ୍ତ ସ୍ଥିର କଲେ ଲିଖିବି ଚିତ୍ରପଟ ସାର,
(ଆଗୋ) ସଙ୍ଗାତ ! ଆଣିମି ତାକୁ ଚିହ୍ନାଇଲେ;
ଚରଣେ ପଡ଼ି ଚତୁରୀ ବୋଲେ ଚିହ୍ନି ଜାଣିବ ସେ ଚିତ୍ର ଦେଖିଲେ ।
ଅଖିଳ ଚିତ୍ରଲେଖନ ଚିତ୍ରକାର ବିଚିତ୍ର ଚିତ୍ର କମନୀୟ,
ନୀଳାଦ୍ରିନାଥ ଚନ୍ଦ୍ରମୁଖ ଚିତୋଇ ଚିତ୍ରଲେଖା ଚିତ୍ରେ ବିନୟ,
ଚତୁରୀ, (ସେ ଯେ) ପଟେ ଲିଖିଲା ପୁରି ଭିନ,
ଚଞ୍ଚଳ ଚିତ୍ତ ଥିର କରି ସେ ଚିତ୍ର ଦେଖାଇ କୁରଙ୍ଗୀ ନୟନା ।
ଉରଗ-ପୁରର ନିଜ କାନ୍ତ ନ ପାଇ ଚଞ୍ଚଳ ଚକ୍ଷୁ ବାହୁଡ଼ିଲା,
ନବ ଜଳଧର ନୀଳଦେହ ଦୃଷ୍ଟି ଗଲା ଚିତ୍ତ କି ଲେଉଟିଲା ।
ସଜନି ! (ସେ ମେ) ଅମରପୁର ଦେବଗଣ,
ଯଥାବିଧି କରି ମଣ୍ଡାଇ ଲିଖିଲା ଏକେ ଏକେ ନାମ ଧରିଣ ।

---

ନୃତ୍ୟ; ଚେତନା ହେଲା ବିକଳ । ଶରଦ ଚନ୍ଦ୍ରାନନୀ—ଶରତ୍ କାଳର ନିର୍ମଳ ଚନ୍ଦ୍ର ପରି ସୁନ୍ଦର ମୁଖ ଯାହାର; ୮ । ଜାଡ଼ି ବାନ୍ଧି ତୁଣ୍ଡ—ତୁଣ୍ଡରୁ କଥା ବାହାରିଲା ନାହିଁ, ନବଜଳଦ କାନ୍ତି ଶ୍ୟାମ—ନୂଆ ମେଘପରି ନୀଳବର୍ଣ୍ଣ, ହଡ଼ମ୍ପଣ—ହଟହଟା ହଇରାଣ; ନ ଗଣ୍ଠେ—ସମାନ ହେବେ ନାହିଁ; ୧୦ । ଅଖିଳ ଚିତ୍ରଲେଖନ ଚିତ୍ରକାର—ଯେଉଁ ଜଗନ୍ନାଥ ବିଶ୍ୱର ଚିତ୍ର ଲେଖିବାରେ ଚିତ୍ରକାର, ଅର୍ଥାତ୍ ଯିଏ ଏ ବିଚିତ୍ର ବିଶ୍ୱର ସ୍ରଷ୍ଟା; କମନୀୟ—ସୁନ୍ଦର, ନୀଳାଦ୍ରିନାଥ—ଜଗନ୍ନାଥ, ଚିତୋଇ—ସ୍ମରଣ କରି; କୁରଙ୍ଗନୟନୀ—ମୃଗନୟନା ଉଷା; ୧୧ । ଉରଗ ପୁର—ନାଗଲୋକ ବା ପାତାଳ,

ଇନ୍ଦ୍ର ଚନ୍ଦ୍ର ରବି ବରୁଣ କୁବେର ଯମ ଅନଳ ଶିବ ଲୋକ
ଗନ୍ଧର୍ବ କନ୍ନର ଜଣେ ଜଣେ କରି ବଚନେ କେ କହୁ ଅନେକ,
ରମଣୀ, (ସେ) ଅନେକ ପୁରୁଷ ଦେଖିଲା,
ରତ୍ନମନ୍ଦିରେ ପଞ୍ଜୁରୀ ପିକ ଯେହ୍ନେ ଚୂତମୁକୁଳ ନ ଦେଖିଲା । ୧୨
ଅଶେଷ ଦେବ ନାଗଲୋକ ଦେଖାଇ ସୁନ୍ଦରୀ ସଙ୍କେତ ନ ଦେଖି,
ଅବନୀ ଦାନବ ମାନବ ସକଳ ନୃପତି ନଗର ନିରେଖି,
ସଖୀ ଯେ, (ତାକୁ) ସବୁ ପୁରମାନ କହିଲା;
ଅଶେଷଭୁବନ ତ୍ରିତି ଦିବ୍ୟପୁର ଦେଖନ୍ତେ ମନକୁ ମୋହିଲା ।
ମାନସରୋବରେ ହେମ ପଦ୍ମପରେ ଶୋଭି କି ମତ୍ତ ରାଜହଂସ,
କନକ ପାଚିରୀ ସାଗର ଭିତରେ ମଧ୍ୟରେ ଦ୍ୱାରବତୀ ଦେଶ,
ସେ ପୁର, ବଚନେ କେ କହୁ ଉପାମି,
ମହାମଣ୍ଡଳେ ପ୍ରକାଶ ହୋଇଅଛି ବିବିଧ ରତ୍ନଜାତ ଭୂମି ।
ଅବନୀ ଗଗନ ଶେଷଭାଗେ କି ସେ ଉଦେ ଶରଦ ଶୀତକର,
ହଂସଗମନୀ ମନସିନ୍ଧୁ ଆନନ୍ଦ ପ୍ରକାଶେ ଲୋଚନ-ଚକୋର ।
ସେ ପୁରେ, ଅଠର ବଂଶ ଲୋକମାନ;
ରାଜା ଉଗ୍ରସେନ ଆଦି ଅନୁସରି ଦେଖିଲା ମୁକୁନ୍ଦ ସଦନ ।

---

ନବ ଜଳଧର...ଲେଉଟିଲା । ଚାତକୀ ଆଗରେ ଗଙ୍ଗା ଦେଖିଲେହେଁ ସେଥିରୁ ଜଳ ନ ପିଇ ମେଘ ପାଖକୁ ଧାଇଁବା ପରି । ଅମରପୁର—ସ୍ୱର୍ଗ; ୧୨ । ରତ୍ନମନ୍ଦିରରେ ପିଞ୍ଜରାରେ ଥିବା ପିକ ଯେପରି କାତର ହୋଇ ଆମ୍ବବଉଳ ଦେଖିବାକୁ ବ୍ୟାକୁଳ ହୁଏ, ସେହିପରି ଉଷା ସ୍ୱର୍ଗପୁରର ଏତେ ଦେବତାଙ୍କୁ ଦେଖିଲେ ମଧ୍ୟ ତାର ସ୍ୱପ୍ନଦୃଷ୍ଟ ପୁରୁଷଙ୍କୁ ନ ଦେଖି ଅଧୀର ହେଲା; ୧୩ । ଅବନୀ ଦାନବ ମାନବ—ମର୍ତ୍ତ୍ୟର ରାକ୍ଷସ ଓ ମନୁଷ୍ୟ, ଅଶେଷ ଭୁବନତ୍ରିତି ଦିବ୍ୟପୁର—ଅଗଣିତ ସଂସାର ତୁଳନାରେ ମନୋହର ପୁର; ୧୪ । ଉପାମି—ତୁଳନା କରି, ଉପମା ଦେଇ; ୧୫ । ଅବନୀଗଗନ...ଶୀତକର—ଦ୍ୱାରବତୀ

ମନ ମଦନ-ବିଧୁର ପାସୋରିଲା ପରମବ୍ରହ୍ମ ପୁରେ ପଶି,
ଷୋଳ ସହସ୍ର ଶହେ ଅଷ୍ଟ ଦିବ୍ୟପୁର ରମଣୀ ଚାହିଁଲା ବିଶେଷି ।
ଅବଳା, (ସେ ଯେ) ବସୁଦେବ ଦେଖି ହରଷ;
ରାମକୃଷ୍ଣ ତାଙ୍କ ସନ୍ନିଧେ ଦେଖିଣ ଉତ୍ସୁକ ଲାଜେ ହସ ହସ । ୧୬
ଯୋଗୀନ୍ଦ୍ର ହର-ତପହତ କାମକୁ ଅଙ୍ଗୁଳି ଦେଇ ଦେଖାବନ୍ତେ;
କୁରଙ୍ଗୀଲୋଚନୀ ଲାଜେ ସଙ୍କୁଚିତ ତନୁ ଓଢ଼ାଇଲା ପଣନ୍ତେ ।
ବାଳା ଯେ, ତହୁଁ ଦେଖିଲା ଅନିରୁଦ୍ଧ,
ଅପାଙ୍ଗେ ଚାହିଁ ପୁଲକିତ ହୋଇଲା ନ ଚାହିଁ ଚାହିଁବାକୁ ସାଧ ।
କପୋଳପାଳୀ ପୁଲକ ମୁକୁଳିତ ଉଲସି ଉଠେ କଳେବର,
କନକ କଦଳୀ ଜଘନ ସ୍ତମ୍ଭିତ, କମ୍ବୁକଣ୍ଠରେ ସ୍ୱେଦ ନୀର,
ବାଳା ଯେ, (ତାର) ଲପନ ବିମ୍ବ ବିକାଶିଲା,
ବିପୁଳ ସଘନ ପୀନ ପୟୋଧର ସଧୀରେ କମ୍ପି ଆସିଲା ।
ଚଞ୍ଚଳତର ତରଳ ଦୃଗଞ୍ଚଳ ବଲ୍ଲଭବଦନେ ପଡ଼ିଲା,
ମାଳତୀ ମଧୁର ମଧୁରସେ କି ସେ ମଧୁକର ମତ୍ତ ବୁଡିଲା ।
ତ୍ରପା ଯେ (ତାକୁ) ବିଯୋଗ କରେ ପୁଣି ପୁଣି;
ଚାରୁ ମନୋରଥ ତା ସଙ୍ଗେ ବିବାଦ ସେନେହ କରେ ଆଣି ଆଣି ।

---

ପୁରକୁ ଦେଖିଲେ ମନେହୁଏ, ସତେ ଅବା ପୃଥିବୀ ଓ ଆକାଶର ମିଳନସ୍ଥଳରେ (ଚକ୍ରବାଳରେ) ଶରତ୍‌କାଳର ନିର୍ମଳ ଚନ୍ଦ୍ର ଉଇଁଛି କି ? ମୁକୁନ୍ଦସଦନ—ଶ୍ରୀକୃଷ୍ଣଙ୍କ ବାସ; ୧୬ । ପରମବ୍ରହ୍ମପୁର—ଶ୍ରୀକୃଷ୍ଣଙ୍କ ପୁର; ମଦନବିଧୁର—କାମପୀଡ଼ା । ୧୭ । ଯୋଗୀନ୍ଦ୍ର—ଶ୍ରେଷ୍ଠ ଯୋଗସାଧକ; ହରତପହତ—ଯିଏ ଶିବଙ୍କର ତପସ୍ୟା ଭଙ୍ଗ କରିଥିଲେ, ତନୁ ଓଢ଼ାଇଲା—ଦେହକୁ ଘୋଡାଇ ଦେଲା, ଅପାଙ୍ଗ—ବାଙ୍କ ଚାହାଣୀ, ପୁଲକିତ—ରୋମାଞ୍ଚିତ, ସାଧ—ଶ୍ରଦ୍ଧା, ଆଦର; ୧୮ । କପୋଳପାଳୀ—ଗଣ୍ଡଦେଶ; ପୁଲକ ମୁକୁଳିତ—ହର୍ଷରେ ରୋମାଞ୍ଚିତ, କମ୍ବୁକଣ୍ଠ—ଶଙ୍ଖସଦୃଶ ଗଳା, ସ୍ୱେଦନୀର—ଝାଳ, ଲପନବିମ୍ବ—

ଅଶେଷ-ରମଣୀ-ଶିରୋଭୂଷାମଣି ଧଇର୍ଯ୍ୟ ମନେ ନ ମଣିଲ,
ଲୋଚନପଥେ ମନକୁ ଯୋଗ କରି ଚିତ୍ରଶୋଭା ବେଗେ ଆଣିଲା ।
ସ୍ନେହରେ, (ତାକୁ) ହୃଦୟ-ତଟରେ ବସାଇ,
ହାଇ ବାଇ, କର ହୃଦରେ ଭିଡ଼ିଲା ମୁଖେ ମୁଖ ମନ ମିଶାଇ । ୨୦
ମନମତ୍ତକରୀ ବାରଣ ନ ଯାଇ ଜାଣିଲ ସଖୀ ଚିତ୍ରଲେଖା,
ଅତି ଯତନେ ପଟ ମୁଦ ଥୋଇଲା କହି ମଧୁର ମୃଦୁ ଭାଖା ।
ସଙ୍ଗାତ ! ଦୁର୍ଲ୍ଲଭ ଜନେ ଅନୁରାଗ,
ଚଉଦ ଭୁବନେ ଯେତ୍ତେ ଅପ୍ରୂପ ରୂପ ତାହାରେ ବଳିଲା ସରାଗ ।
ଚନ୍ଦ୍ରବଦନୀ ହେଠମାଥେ ବସିଲା, ସଖୀ କହଇ ରସବାଣୀ;
ଉଷାପତି-ତାତ-ପିଅର-ଚରଣେ ଶିଶୁଙ୍କର ଶିରୋମଣି ।
ସୁଜନେ, ଶୁଣି ନ ଧର ମୋର ଦୋଷ;
ପଞ୍ଚମ ଛାନ୍ଦ ଶୁଭେ ଶେଷ ହୋଇଲା ସରସ ଉଷା-ଅଭିଳାଷ । ୨୨

---

ମୁକୁର— ଦର୍ପଣ; ପୀନ—ଉଚ୍ଚ, ପୟୋଧର—କୁଚ, ସ୍ତନ; ୧୯ ।
ଚଞ୍ଚଳତର—ଅତି ଚଞ୍ଚଳ, ଦୃଗଞ୍ଚଳ—ଚକ୍ଷୁ, ତ୍ରପା—ଲଜ୍ଜା; ୨୦ । ହାଇବାଇ
—ଅଥୟ; ୨୧ । ବାରଣ—ବା[illegible]; ପଟ—ପଟଚୀର, ଭାଖା—ଭାଷା,
ଅନୁରାଗ—ପ୍ରୀତି; ୨୨ । ଉଷାପତି—ଅନିରୁଦ୍ଧ, ତାଙ୍କର ତାତ—କନ୍ଦର୍ପ,
ତାଙ୍କର ପିଅର—ଶ୍ରୀକୃଷ୍ଣ ।

## ଷଷ୍ଠ ଛାନ୍ଦ

### ବାଣୀ—(ମଙ୍ଗଳ ଗୁଜ୍ଜରୀ) ନଳିନୀଗୌଡ଼ା

ଭବକୁ ନିକଟ ସେ ଜଗତଜନ ବନ୍ଧୁ
ଆରତ ଜନର ସେ କରୁଣାମୟ ସିନ୍ଧୁ ଗୋ ।
ତାହାଙ୍କ ଚରଣ ମନେ ଧରି ସଦ୍ଗତି
ଭଣି ମୁଖ ଶୁଣିଁ ରସ ବଚନ ପଦ୍ଧତି ଗୋ ।
ଅନାଦି ପୁରୁଷ ଯାର ଆଦି ଅନ୍ତ ନାହିଁ
ଅବନୀ ଜନମ ହେଲେ କ୍ଷିତି ଭାର ପାଇଁ ଗୋ
ମଥୁରା ନଗରେ ଜାତ ବସୁଦେବ ଘରେ
ଗୋପରେ ବଢ଼ିଲେ ଯାହିଁ କଂସରାଜା ଡରେ ଗୋ । ୪
ପୂତନା ଶକଟା ବତ୍ସ ବକା ଅଘାସୁର
ପ୍ରଳମ୍ବା ଧେନୁକା ତୃଣା କେଶୀ ମହାବୀର ଗୋ ।
ଶଙ୍ଖଚୂଡ଼ ବେଦଗ୍ଧେର ବ୍ୟୋମାସୁର ଆଦି
ଲୀଳାମାତ୍ରେ ମାରିଲେ ଅମରପୁରବାଦୀ ଗୋ
କୁବେରନନ୍ଦନ କଲେ ଶାପରୁ ମୁକତ
ଗିରି ତୋଳି ସୁରପତି ଗର୍ବ କଲେ ହତ ଗୋ ।

---

୧ । ଭବ—ଭକ୍ତ, ଆରତ—ଦୁଃଖଗ୍ରସ୍ତ; ୨ । ଅନାଦି—ଯାହାଙ୍କର ଆଦି ବା ଉତ୍ପତ୍ତି ନାହିଁ; ୩ । ଅମରପୁରବାଦୀ—ସ୍ୱର୍ଗପୁରର ଶତ୍ରୁ, ଅସୁର; ୪ । କୁବେରନନ୍ଦନ—ଯାମଳାର୍ଜ୍ଜୁନ ରୂପ ଧରିଥିବା କୁବେରଙ୍କ ଦୁଇ ପୁଅ, ଗିରି—ଗୋବର୍ଦ୍ଧନ ପର୍ବତ;

ଶିଶୁ ବତ୍ସ ହରଣ ହାରିଲା ଯାକୁ ବ୍ରହ୍ମା
କାଳୀ ଦଳ ରୁହାଇଲେ କାଳିନ୍ଦୀ ମଧ୍ୟମା ଗୋ । ୮
ଧ୍ରୁବକୁ ନିକଟ ଯେ କରୁଣାମୟ ବଣି
ରମିଲେ ଗୋପରମଣୀ ଭାବରଙ୍ଗେ ତୋଷି ଗୋ ।
କୁବଳୟା ହସ୍ତୀ ଅଷ୍ଟମଲ୍ଲ ମୂଳେ କଂସ
ଲୀଳାମାତ୍ରେ ମାରଣ ରଖିଲେ ଯଦୁବଂଶ ଗୋ ।
ଜରାସନ୍ଧ ରାଜାକୁ ଅଠରବେଳ ଜିଣି
କପଟେ କାଳଯବନ ନାଶି ଯଦୁମଣି ଗୋ ।
କୁଶସ୍ଥଳୀ ପୁର ସିନ୍ଧୁ ଭିତରେ ଉତ୍ତମ
ନବର ରଚିଲେ ତହିଁ ଅତି ମନୋରମ ଗୋ । ୧୨
ଷୋଳ ସହସ୍ର ଶଏ ଅଷ୍ଟ ଶୂର ରାଜଜେମା
ଅଷ୍ଟ ପାଟବଂଶୀ ଶ୍ରେଷ୍ଠ ଭୀଷ୍ମକର ଜେମା ଗୋ ।
ତାହାଙ୍କର ଜ୍ୟେଷ୍ଠ ପୁତ୍ର ପ୍ରତକ୍ଷେ ମଦନ;
ଅନିରୁଦ୍ଧ ଦେଖିଲୁ ତୁ କାମର ନନ୍ଦନ ଗୋ ।
ଅଗମିତ ପୁର ତାର ଦୁର୍ଲ୍ଲଭ ଦର୍ଶନ
ତୋହର ବେଦନା ଅର୍ଥେ କରିବ ଗମନ ଗୋ ।
ପାରିଲେ ଆଣିମି ମନ ନ କର କାତର
ଶୁଣିଣ ସୁନ୍ଦରୀ ବନ୍ଦେ ନୟନରୁ ନୀର ଗୋ । ୧୬

---

୮ । ବ୍ରହ୍ମା ଗୋପପୁରର ଶିଶୁ ଓ ବାଛୁରୀମାନଙ୍କୁ ହରଣ କରିବାରୁ ଶ୍ରୀକୃଷ୍ଣ ନିଜ ଉଦରରୁ ସେମାନଙ୍କୁ ବାହାର କରି ବ୍ରହ୍ମାଙ୍କୁ ହରାଇଥିଲେ; ୧୦ । କୁବଳୟାହସ୍ତୀ – କଂସର ହାତୀ, ଅଷ୍ଟମଲ୍ଲ ମୂଳେ—ମୁଷ୍ଟିକ ଚାଣୂର ପ୍ରଭୃତି ଆଠମଲ୍ଲ ସହିତ; ୧୧ । ଯଦୁମଣି—ଯଦୁବଂଶର ଶ୍ରେଷ୍ଠ ଶ୍ରୀକୃଷ୍ଣ; ୧୨ । କୁଶସ୍ଥଳୀ—ଦ୍ୱାରକା; ୧୩ । ଭୀଷ୍ମକଜେମା—ରୁକ୍ମିଣୀ, ଅଷ୍ଟ ପାଟରାଣୀଙ୍କ ମଧ୍ୟରେ ଶ୍ରେଷ୍ଠ; ୧୪ । ଅଗମିତ—ଅଗମ୍ୟ, ଅର୍ଥେ—ନିମନ୍ତେ;

ଚରଣ ଧରଇ ସଖି ! ମୁହିଁ ମନ୍ଦଭାଗୀ
ଲାଜ ଉପେକ୍ଷିଲି ମୁଁ ଦୁର୍ଲ୍ଲଭ ଜନ ଲାଗି ଗୋ ।
ବିଳମ୍ବ ନ କର ଚାଲ ପଥ ହେଉ ଶୁଭ
ଲକ୍ଷ୍ମୀପତି ମନୋରଥ କରନ୍ତୁ ସୁଲଭ ଗୋ ।
ପରମ ମଙ୍ଗଳର ମଙ୍ଗଳ ଜଗନ୍ନାଥ
ତାହାଙ୍କୁ ସୁମରି ଚାଲ ଦ୍ୱାରବତୀ ପଥ ଗୋ ।
ସଦାଶିବ ଗଉରୀ ହେରମ୍ବ ହୋନ୍ତୁ ସାହା
ବିଳମ୍ବ ନ ହୋଇ ବେଗେ ଆଣ ପ୍ରାଣନାହା ଗୋ । ୧୦
ଶୁଣିଣ ସାନନ୍ଦ ମନେ କୁଷ୍ମାଣ୍ଡ ଦୁହିତା
କମଳ-ଦଳ-ଲୋଚନ ମନେ କଲା ଚିନ୍ତା ଗୋ ।
ମଙ୍ଗଳ ସଙ୍କେତ ତାକୁ ହୋଇଲା ଦର୍ଶନ
ଅନ୍ତରୀକ୍ଷେ ଚଳିଗଲା ଦ୍ୱାରକାଭୁବନ ଗୋ ।
ସମୁଦ୍ର ନିକଟେ ରହି ନ ପାରଇ ପଶି
ମନେ ଭାଳୁଁ, ଭେଟିଲା ନାରଦ ମହାଋଷି ଗୋ ।
ମୁନିଙ୍କି କାର୍ପଣ୍ୟ ହୋଇ ବୋଲଇ ଗୋସାଇଁ
କେମନ୍ତେ ଦ୍ୱାରକା ମୁହିଁ ପଶିବଇଁ ଯାଇ ଗୋ । ୧୪
ସର୍ବଜ୍ଞ ପୁରୁଷ ସେ କହିଲେ ମନ୍ତ୍ରସାର
ତାହା ଘେନି ପଶିଲା ସେ କୃଷ୍ଣର ନଗର ଗୋ ।
ପୁରେ ପୁରେ ଅନୁସରି ଲୋଡ଼ଇ ତରୁଣୀ
ଅନିରୁଦ୍ଧ ଉନ୍ମତ ଉଷାଭାବ ଗୁଣି ଗୋ ।

---

୧୦ । ସଦାଶିବ--ମହାଦେବ; ଗଉରୀ—ପାର୍ବତୀ; ହେରମ୍ବ—ଗଣେଶ; ପ୍ରାଣନାହା—ପ୍ରାଣନାଥ, ଅନିରୁଦ୍ଧ; ୧୧ । କୁଷ୍ମାଣ୍ଡଦୁହିତା— ମନ୍ତ୍ରୀ କୁଷ୍ମାଣ୍ଡର କନ୍ୟା ଚନ୍ଦ୍ରଲେଖା ୧୪ । କାର୍ପଣ୍ୟ ହୋଇ—କାକୁତିମିନତି କରି ; ୧୬ । ଉନମତ—ଉନ୍ମତ୍ତ, ଅଧୀର ;

ରଜନୀ-ସପନ-ଧ୍ୟାନ ପଲଙ୍କରେ ବସି
ବିଷଣ୍ଣ ବିଳାସ ରସେ କେତେବେହେଁ ନ ରସି ଗୋ ।
ଉଠଇ ବସଇ ଉରେ ଚାପଇ ଚନ୍ଦନ
ଶୀତଳ ସମୀର ଇଚ୍ଛେ ମଦନ-ନନ୍ଦନ ଗୋ । ୨୮
ବିଳାସିନୀ-ବୃନ୍ଦ ବେଢ଼ି ନୃତ୍ୟଗୀତ ଗାଇ
ବିମୁଖ କୁମରମଣି ରମଣୀ ନ ପାଇ ଗୋ ।
କୋକିଳ ବଚନ ଶୁଣି ଚମକଇ ଦେହ
ସପନ ଭାବଣ କ୍ଷଣେ କ୍ଷଣେ ହୋଏ ମୋହ ଗୋ ।
ଗୁପତ ବେଦନା ତାର ନ ଜାଣଇ କେହି
ଚିତ୍ରଲେଖା ହରଷ, ଚକିତ ହୋଏ ଦୃଷ୍ଟି ଗୋ ।
ମନ୍ତ୍ରବଳେ ପଲଙ୍କ ସହିତ ଘେନି ଶିରେ
ଦିବସ ଶେଷେଣ ମିଳେ ଶୋଣିତ ନଗରେ ଗୋ । ୩୨
ଅନ୍ତପୁରେ ଉଷାର ମେଢ଼ରେ କଲା ନେଇ
ପଲଙ୍କ ଚେଜଣ ଗ୍ରୀମା ତଳେ ଅଛି ଶୋଇ ଗୋ ।
ବିସ୍ମୟ ଆନନ୍ଦ ଦେଖି ମନସିଜ-ସୁତ
ପଲଙ୍କୁ ଉତୁରି ସାର ହୋଏ ଉପଗତ ଗୋ ।
ବିରହେ ବ[illegible]ର ଶିଶୁ କୁରଙ୍ଗୀ-ଲୋଚନୀ
ଅନିରୁଦ୍ଧ ସମୀପେ ବସିଲା ସ୍ନେହ ଘେନି ଗୋ ।
ଲାଜ ଭୟ କାତର ମନରେ ହୋଏ ଜାତ
ମଦନ ବାଧିଲା ତାକୁ ହୋଇଲା ଉଦ୍ଧତ ଯେ । ୩୬

---

୨୮ । ଉରେ—ଛାତିରେ; ମଦନନନ୍ଦନ—ଅନିରୁଦ୍ଧ । ୨୯ । ବିଳାସିନୀ—ରସିକା ରମଣୀ । ବିମୁଖ—ଦୁଃଖିତ, ବିଷଣ୍ଣ । ୩୨ । ଶୋଣିତ ନଗର—ଶୋଣିତପୁରର ନଗର ।

ଅଧରେ ଅଧର ଦେଇ ଶ୍ଳେଷ ମୃଦୁ ବାଣୀ
ପ୍ରାଣବନ୍ଧୁ ହସି କଥା କହସି ମିଠଣି ଗୋ ।
ଚକିତ ରମଣୀ ଲଜେ ହେଠମାଥେ ବସି
ସାହୁଭସ୍ପେ ଶଶୀ କି କଣ୍ଡୁ ଗିରି ପଶି ଗୋ ।
ଦ୍ୱାରକା-ପତି ଚରଣେ ଦାସ ପରିଦାସ
କହଇ ଶିଶୁଶଙ୍କର ଉଷା-ଅଭିଳାଷ ଗୋ । ୩୯

— — —

୩୬ । ଉଷାର ମେଢ଼ରେ—ଉଷା ଥିବା ଅନ୍ତଃପୁରରେ; ୩୭ । ମନସିଜ-ସୁତ—କନ୍ଦର୍ପର ପୁଅ ଅନିରୁଦ୍ଧ; ୩୮ । କଣ୍ଡୁଗିରି—ସୁନାର ମେରୁ-ପର୍ବତ; ୩୯ । ଦାସ ପରିଦାସ—ଦାସାନୁଦାସ, ଗୃହକରର ଗୃହକର ।

## ସପ୍ତମ ଛାନ୍ଦ

### ଦଶ—ଶ୍ଳେଷୀ

ସପନ ଚେଣ୍ଟିଆ ବାଣୀରେ ଗାଇବ ।

ଏଥୁ ଅନନ୍ତରେ ତନ୍ୱୀ        ଅବନୀରେ ଥିଲା ଶୋଇ
ସ୍ୱରୂପେ ଦେଖିଲା ରମା ସଜନୀ ସଙ୍ଗେ,
ଅଭିନବ ମନସିଜ        ଅଭିମତ ଫଳ ଦ୍ୱିଜ,
ଲାଜ ଭୟ ସାତ୍ତ୍ୱିକ୍ୟ ତା ବାଧିଲା ଅଙ୍ଗେ;
ଯେମନ୍ତ ସେ ହୋଇଲା ବାଳା;
ବଚନେ କହିବ କେହୁ ସେ ରସକଳା ।
ମାଧବୀ ମଧୁ ସମୟେ        ରସାଳ ମଳୟ ବାୟେ
ମଧୁପ, ମାଳତୀ କଳୀ ବିକାଶେ ଜାଣି,
ଚାତକ ପୟୋଦ ଦେଖି        କୁମୁଦ ଶଶୀ ନିରେଖି
ରସିକ ସୁଜାଣ ପାଇ ବର-ତରୁଣୀ
ଶଶିମୁଖୀ ଆନନ୍ଦ ତେହ୍ନେ
ଉପଦେଶ ଅନୁଭବ ସୁଜନ ଯେହ୍ନେ ।

---

୧ । ଅବନୀରେ—ଭୂଇଁରେ; ଅଭିନବ ମନସିଜ—ନୂଆ କନ୍ଦର୍ପ ବା ଦ୍ୱିତୀୟ କନ୍ଦର୍ପ ତୁଲ୍ୟ, ଅଭିମତ ଫଳ ଦ୍ୱିଜ—ଅଭିଳଷିତ ଫଳ ଦେବାକୁ ସମର୍ଥ ବ୍ରାହ୍ମଣ, ସାତ୍ତ୍ୱିକ୍ୟ—ସାତ୍ତ୍ୱିକ ବିକାର, (ଏହା ଅଠ ପ୍ରକାର—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ (କମ୍ପନ), ବିବର୍ଣ୍ଣତା, ଅଶ୍ରୁ, ପ୍ରଳୟ । (ସ୍ତମ୍ଭଃ ସ୍ୱେଦୋଽଥ ରୋମାଞ୍ଚଃ ସ୍ୱରଭଙ୍ଗୋଽଥ ବେପଥୁଃ । ବୈବର୍ଣ୍ଣ୍ୟ-

ପାଣ୍ଡୁ ହୋଇଥିଲା ଗଣ୍ଡ        ସହଜେ ସୁନ୍ଦର ତୁଣ୍ଡ
ଦମ ଦମ ପୟୋଧର ତଟ, ରମଣୀ
କଣ୍ଠରେ ରୁନ୍ଧିଲା ବାଣୀ        ପୁଲକିତ ହୋଇ ଶୁଣି
ବିଶେଷେ ବାଧିଲା ଲାଜ ଚତୁରମଣି
ଚେଳାଞ୍ଚଳେ ଢାଙ୍କି ଅଙ୍ଗ
ମୁଖ ଶଶୀ କଲା କୁଚ-ଶମ୍ଭୁରେ ସଙ୍ଗ ।
ଚୁମ୍ବଶିଳ ଲୌହ ଜାଣି        ଭୁଶଳେ କୁମରମଣି
ବିଷୟ ବିଟବକ ଜଣି ଚଗଳମନା
କୁମାରୀ ସନ୍ନିଧେ ବସି        ବିନୟ ବଚନ ଭାଷି
ସଭୟେ କହେ ସୁକେଶୀ ମୃଗଲୋଚନା
ଦୃଗଞ୍ଚଳେ ହର ମୋ ମତି
ଉରଜ-ସଙ୍କଟେ କହେ ଭରି ଯୁବତୀ । ୪
ଇଷିତ ଆଜ୍ଞାରେ ଯାର        ଚାଲେ ଆସି ପରଗୁର
ଅବମା ଶୟନ କଟେ ପାଣ୍ଡୁର ଗଣ୍ଡ
ଯେବେ ଅଛି ଅନୁରାଗ        ଭିଡ଼ ମୋରେ ଭୁଜ ଯୁଗ
ଅପରାଧ ଅନୁରୂପେ କରହ ଦଣ୍ଡ
କରରୁହ ଦଶନ କ୍ଷତ
ଯେଣେ ଶେଷ ଛାଡ଼ ହୋଏ ହରଷ ଜାତ ।

---

ମନ୍ତ୍ର ପ୍ରଳୟ ଇତ୍ୟଷ୍ଟୌ ସାତ୍ତ୍ୱିକାଃ ସ୍ମୃତା ॥ ); ୨ । ରସାଳ—ଆମ୍ବ, ପ୍ରସ୍ତୋଦ—ମେଘ, ବରତରୁଣୀ—ଶ୍ରେଷ୍ଠ ଯୁବତୀ; ସୁଜାଣ—ସୁଜ୍ଞ; ୩ । ଚେଳାଞ୍ଚଳ—ପଣତକାନି, ମୁଖଶଶୀ...ସଙ୍ଗ—ମୁଖ ରୂପକ ଚନ୍ଦ୍ରକୁ କୁଚ ରୂପକ ଶିବ ସହିତ ମିଳାଇଲା; ଅର୍ଥାତ୍ ଲାଜରେ ମୁହଁ ତଳକୁ ପୋତି ରହିଲା; ୪ । ଚୁମ୍ବଶିଳ—ଚୁମ୍ବକ ପଥର, ଉଷା ଚୁମ୍ବକ ପଥର ସଙ୍ଗେ ଓ ଅନିରୁଦ୍ଧ ଲୌହ ସଙ୍ଗେ ତୁଳିତ । ଉରଜ ସଙ୍କଟ—କୁଚସନ୍ଧି, ୫ । ପରଗୁର—ସେବକ

ହେମ ବେନ ତଟ ଭେଦ ବହେ କି କାଳନ୍ଦୀ ନଦୀ
ଚରମ-ଦେଶରେ ଘନକୁନ୍ତଳ ଲୁଳେ
କନକ-ଶଇଳ ତଟେ ଗମେ କି ଚନ୍ଦ୍ରନକଟେ
ନିଶି-ଅଭିସାରୀ ଓଢ଼ି ତମ-ଦୁକୂଳେ
ଦୃଷ୍ଟି କି ମୋ କଲା ବିଯୋଗ
ମୁଖ-ଶଶୀ ବିକାଶିଲେ ଦିଶିବ ଦିଗ ।
କୁଚ-ହେମଗିରିବର ତଟୁଁ କି ତଟିନୀ ଧାର ,
ତ୍ରିବଳି-ତ୍ରିବେଣୀ ସଙ୍ଗେ ଏ ପ୍ରେମରାଜ
ତୋ'ସ୍ତବ ଲଭିବା ପାଇଁ ମାନସ-ହ୍ରଦରେ ଯାଇଁ
ଝାସିଲ ପବସ ଜଳେ ନର୍ଭରେ ମଜ୍ଜି
କାମ-ସୁଅ ଗଡ଼ାଇ ନେଲା
ଗଭୀର ନାଭି-ଭଉଁରୀ ବଧିର କଲା ।
ଅବଲମ୍ବି ତୁମ୍ବୀ ଫଳ ନିତମ୍ବ-ବିମ୍ବ ଯୁଗଳ
ଲଭି ମୁଁ ପାଇଲି କାମ-ନଦୀର ପାର
ପୁଣିହିଁ କାମ-ସନ୍ତାପେ ତୋ କୁଚ ଶଙ୍କର ରୂପେ
ଧ୍ୟାନେ ତୋଷି ଥିଲାକୁ ଟି ତୋ ପଟିଗୁର
କୃପା-ଲୋଳ-ଲୋଚନେ ଚୁହିଁ
ନିଜ ଦାସ ଜନ ମନ କର ଉଚ୍ଛୁହା । ୮

---

କରନ୍ତୁ ଦଣ୍ଡ—ଦଣ୍ଡବିଧାନ କର, କରରୁହ—ନଖ, ଦଶନ—ଦାନ୍ତ; ୬ । ଚରମ ଦେଶ--ପିଠି, ଲୁଳେ—ଲୋଟୁଛି, ନିଶି ଅଭିସାରୀ—ରଜନୀ ରୂପକ ଅଭିସାରିକା, ନାୟିକା, ଓଢ଼ି—ବେଢ଼ାଇ ହୋଇ, ତମ ଦୁକୂଳ—ଅନ୍ଧକାର ରୂପକ ପାଟଶାଢ଼ୀ; ୭ । ତ୍ରିବଳି--ପେଟରେ ଥିବା ତିନୋଟି ମୋଡ଼ଆ, ତ୍ରିବେଣୀ---ଗଙ୍ଗା, ଯମୁନା ଓ ସରସ୍ୱତୀର ମିଳନ; ୮ । ତୁମ୍ବୀଫଳ--ଲାଉ, ନିତମ୍ବ---ପିଚ୍ଛ, ଉଚ୍ଛାହା---ଉତ୍ସାହିତ ;

ନୟନେ ଖଞ୍ଜନ ଜିଣି                    ଚରଣେ ଚରଣ ପଣି
ଏଣୁ ଏକ କଳା ଘେନି ନଖେ ରଖିଛୁ
କରୁଣା ବିନୟେ ଜନେ          ତେଣୁ ସେ ତୋର ଲୋଚନେ
ମୁହିଁ ଯେ ଶରଣ ଜନ ରଖ ମୃଗାଛି !
ଭାଷ ପ୍ରିୟେ ! ମଧୁର ବାଣୀ
ବନପ୍ରିୟ ପ୍ରିୟ ଗୁଡ଼ ନବ ରମଣୀ
ହର-ତପ ହତ କରି                   କାମ ଯା'ନ୍ତେ ହେମଗିରି
ନିତ୍ୟ କରେ ମୋହ-ପରିବାଦନୀ ଦେଲା
ଧାତା ବସି ବହୁଯୁଗ              ତୋ ରୂପେ କଲା ସଂଯୋଗ
ହୃଦୟରେ କାମ-ହେମ ଭୃମ୍ବୀ ଥୋଇଲା
କଣ୍ଠତଟେ ଖଞ୍ଜି ଲା ଗୁଣ
ଚଞ୍ଚଳ କଟାକ୍ଷେ ଗୁହିଁ ହୋଇଲା ବାଣ
ପ୍ରିୟେ ! ମୋ ବିନୟ ଘେନି              ଭାଷସି ମୃଦୁ ବଚନ
ନିର୍ଦ୍ଧୟ ମଦନ-ଭୀତ ଅଭୟ କର
କପୋଳେ ମକଣ୍ଠି ଲିହି                ଚରଣେ ଅଳତା ଦେଇ
ପୂରଣ କରିବି ମୋର ଏ ନେତ୍ରକର
ସୁଧାରସ ଅଧରୁ ଦେଇ
ଦାସ କରି କିଣ ମୋତେ କମଳମୁହିଁ !

---

୯ । ନଖେ—ନଖରେ; ମୃଗାଛି—ମୃଗାକ୍ଷୀ; ବନପ୍ରିୟ—କୋକିଳ; ବନପ୍ରିୟ ପ୍ରିୟ ଗୁଡ଼—ତୋର ବାଣୀ କୋକିଳର ବାଣୀଠାରୁ ମଧୁର; ତେଣୁ କୋକିଳ ତାର ପ୍ରିୟାକୁ ଗୁଡ଼ । ୧୦ । ପରିବାଦନୀ—ବୀଣା; କାମ-ହେମ-ଭୃମ୍ବୀ—କନ୍ଦର୍ପର ବୀଣାରେ ଥିବା ସୁନାର ଭୃମ୍ବୀ (ଉଚ୍ଚାର କୁଚଦ୍ୱୟ ଲକ୍ଷିତ) । ୧୧ । ଭାଷସି—ଭାଷ, କହ; ମକଣ୍ଠି-ଅଗୁରୁ, ଚନ୍ଦନ ପ୍ରଭୃତିରେ ଚିତାପାଟି; କମଳମୁହିଁ— ହେ ପଦ୍ମମୁଖି ! ମନୋରଥ—ମନର

ମୋର ମନୋରଥ ପୂରୁ ପ୍ରସନ୍ନେ କରଭ-ଉରୁ
ଆଜ୍ଞା ଦିଅ ପିକବାଣୀ ମଧୁର ସନ୍ତ !
ଝଞ୍ଜି ହାସ୍ୟ ସରି ସରି ବୁଦ୍ଧି ମୋ ନଷ୍ଟକ କରି
ସାଧିବ ସପତ ସ୍ୱର କଣ୍ଠେ ଲଗାଇ
ଏକରସ କରିବ ମନ
ଥାଇ ହଁ ନ ଥିଲା ପ୍ରାୟେ ହୋଇବ ଲୀନ । ୧୨ ।
ଦାରୁଣ ଦୁଷ୍ଟ ମଦନ ନ ରଖଇ ନିଜ ସ୍ଥାନ
ତାତ ସୁତ ମିତ ପ୍ରଭୁ ନ ଜାଣେ କିଛି
ଉଚିତ ବନ୍ଧିଲେ ଶିବ ତୁ ତାହାକୁ ଦେଲୁ ଜୀବ
ଦୋଷ ତେଜ ଉପଗତ ଯେନ ମୃଗାକ୍ଷି !
ମିତ୍ର ତାର କୁଟିଳ-ଇନ୍ଦୁ
ବିଷ ସଙ୍ଗେ ଜାତ କଲା ତାହାକୁ ସିନ୍ଧୁ ।
କୋକିଳ କାକ-କୁମର ସମୀର ସର୍ପ ଆହାର
ଏ କାମର ପରିକର ପିଶୁନ ମଧୁ
ଏମାନେ ସେବିଲେ ତୋତେ ତୁ ଅତି ସରଳ ଚିତ୍ତ
ଯେ ଯାହା ମାଗିଲେ ଦେଇ ଅତି ପ୍ରବୋଧି
ମୋତେ ଦିଅ ଅଧର-ସୁଧା
ପର ଉପକାରୀ ଜନେ କରୁଣା-ଶୁଦ୍ଧା !

---

ଇଚ୍ଛା; ସପତସ୍ୱର—ସଙ୍ଗୀତର ସପ୍ତସ୍ୱର—ସା, ରି, ଗା, ମା, ପା, ଧା, ନି; ଏକରସ—ଏକାଗ୍ର; ଥାଇ...ଲୀନ—ନିଜ ଅସ୍ତିତ୍ୱ ଭୁଲିଯିବ । ୧୩ । ବିଷ-ସଙ୍ଗେ...ସିନ୍ଧୁ—ସମୁଦ୍ର ମନ୍ଥନରୁ ଚନ୍ଦ୍ର ଓ ବିଷ ଉଭୟେ ବାହାରିଥିଲେ । ୧୪ । କାକ-କୁମର କୋକିଳ—କାଉଦ୍ୱାରା ପାଳିତ କୋଇଲି; ସମୀର—ପବନ; ପରିକର—ସେବକ; ପିଶୁନ—ମୂର୍ଖ; ଶୁଦ୍ଧା—ପବିତ୍ର ।

ଏ ତୋର ସନ୍ଦେଶ ପାଇ    ଜନମ୍ମ ମୁ କଲି ନାହିଁ
ସଫଳ ମଣ୍ଡନେ କଲେ ହେଠ-ବଦନ
ତୁ ମୋର ଦେହ ଜୀବନ    ତୁ ମୋର ଭୂଷଣମାନ
ତୁ ମୋର ଇନ୍ଦ୍ର ବିଷୟ ମନ-ସଦନ
ତୁ ମୋହୋର ମୁକୁଟ ଶିରେ
ତୁ ମୋର ସୁକୃତ ଫଳ ସୁଖ-ସାଗରେ ।
ତୁ ମୋର ଗୃରୁ ଚନ୍ଦନ    ତୁ ମୋର ଶିର-ବନ୍ଦନ
ତୁ ମୋର ମଦନ-ଜଳନିଧି ତରଣୀ
ତୁ ମୋ ଗଳେ ବନମାଳ  ତୁ ମୋହୋର ସାଙ୍ଖ୍ୟ ବଳ
ତୁ ମୋର ଭବ-ବିଭବ-ସୁଖ-ସରଣୀ !
ତୁ ମୋହୋର ସବୁ ରମଣି !
ମୁଁ ତୋହର ପରିଗୃର କଲେ ନ ଗଣି ।    ୧୬
ମଦନେ କାତର ହୋଇ    ଚଟୋଇଲ୍ଲ ଗୃହଁ କନ୍ଧ
ଚରଣ ଧରନ୍ତେ କରେ ସୁଜାଣ ରାମା
ସାତୁକ୍ୟ ବିକାରେ ତନୁ    ବିନ୍ଧିଲ୍ଲ କୁସୁମ-ଧନୁ
ଉଠି ପ୍ରଣମିତ କଲ୍ଲ ଅସୁର-ଜେମା
ଭୂଜେ ଭିଡ଼ି ମଦନ-ସୁତ
ବଦନ ଚୁମ୍ବିଲ୍ଲ ହୋଇ ଉଚ୍ଛୁକଚିତ୍ତ ।

---

୧୫ । ସନ୍ଦେଶ—ଖବର, ଇନ୍ଦ୍ର—ଇନ୍ଦ୍ରିୟ; ମନ-ସଦନ—ମନ ରହିବା ସ୍ଥାନ, ସୁକୃତ—ପୁଣ୍ୟକର୍ମ; ୧୬ । ଶିରବନ୍ଦନ—ଶିର ଲଗାଇ ବନ୍ଦାଇବାର ପାତ୍ର, ମଦନ ଜଳନିଧି-ତରଣୀ—କନ୍ଦର୍ପ ପୀଡ଼ା ରୂପକ ସମୁଦ୍ରକୁ ପାର ହେବାପାଇଁ ପୋତ ସଦୃଶ, ଭବ-ବିଭବ-ସୁଖ-ସରଣୀ—ସଂସାରର ସୁଖସମ୍ପତ୍ତି ଲଭିବାର ପନ୍ଥା; ୧୭ । କୁସୁମ-ଧନୁ—କନ୍ଦର୍ପ, ଅସୁର-ଜେମା—ବାଣାସୁର କନ୍ୟା ଉଷା, ମଦନ-ସୁତ—ଅନିରୁଦ୍ଧ;

ଚିତ୍ରଲେଖା ବୋଲେ ବାଣୀ ଶୁଣ ଯୁବା-ଶିରୋମଣି
ତୁ ତନ୍ତ୍ର ମନ୍ତ୍ର-ପଠନେ ସକଳ ଜ୍ଞାତା
ଉଚିତ ବିଧାନ ଯୋଗ ବିଭା ହୋଇ କର ଭୋଗ
ବେଭାରେ ତୁମ୍ଭର ଏହୁ ନବ ବନିତା
ଶୁଣି ବୀର ତେଜିଲା କୋଳ
ଗନ୍ଧର୍ବ-ବେଭାରେ ହୋଏ ବିଭା ମଙ୍ଗଳ ।
ଶୋଣିତପୁର-ସରୋଜ- ବନେ ଉଦେ ଦ୍ୱିଜରାଜ
ତେସନେ ପ୍ରକାଶ ତହିଁ କୁମରମଣି
ଶଶଧର ଉଦେ ଦେଖି ଯେସନେ କୁମୁଦ ସୁଖୀ
ତେହ୍ନେକ ହୋଇଲା ସେ ଗୋ ନବରମଣୀ
ବିଭା-ବିଧି ଶୁଭେ ବଢ଼ିଲା
ମଙ୍ଗଳ ଉତ୍ସବ ଚିତ୍ରଲେଖା ପଢ଼ିଲା ।
ନନ୍ଦ ଗୋପସୁତ ହରି କ୍ରୀଡ଼ା-ରସେ ଗୋପନାରୀ
ଇତରେଶ୍ୱର ଶ୍ୱେର ପଟେଶ ଉତ୍ସୁକମତ
ତାହାଙ୍କ ଚରଣ ବେନି- ସରସିଜ ଶିରେ ଘେନି
ମଧୁପ ଶିଶୁଶଙ୍କର ରସିଲା ମତ
ଗୋପୀନାଥ ସଙ୍କଟ ନାଶ
ଉଷା-ଅଭିଳାଷ କହେ ଶଙ୍କର ଦାସ । ୨୦

———

ଗନ୍ଧର୍ବ-ବେଭାରେ—ଗାନ୍ଧର୍ବ ବିଧିରେ (ବର ଓ କନ୍ୟା ସ୍ୱ ସ୍ୱ ଇଚ୍ଛାରେ ପରସ୍ପରଙ୍କୁ ବିବାହ କରିବା ରୀତି); ୧୯ । ସରୋଜ—ପଦ୍ମ, ଦ୍ୱିଜରାଜ—ଚନ୍ଦ୍ର; ଶଶଧର—ଚନ୍ଦ୍ର । ଚନ୍ଦ୍ର ଉଦୟରେ ପଦ୍ମ ମଳିନ ହେବା ପ୍ରସିଦ୍ଧି ଥିଲେ ହେଁ କବି ଶୋଣିତପୁରରେ ଅନିରୁଦ୍ଧଙ୍କ ପ୍ରକାଶକୁ ପଦ୍ମବନରେ ଚନ୍ଦ୍ରଙ୍କ ପ୍ରକାଶ ସଙ୍ଗେ ତୁଳନା କରିଅଛନ୍ତି; ୨୦ । ଶ୍ରୀକୃଷ୍ଣଙ୍କ ପାଦ ଦୁଇଟି ପଦ୍ମ ପରି; କବି ସେ ପଦ୍ମର ରସ ପିଇବାକୁ ଭ୍ରମର ପରି ।

# ଅଷ୍ଟମ ଛାନ୍ଦ

## ରାଗ—କେଦାର

ଚନ୍ଦ୍ରକେଳି ବାଣୀରେ ଗାଇବ ।

ଦୂତୀ ବଚନ ଶୁଣି ଅନିରୁଦ୍ଧ
ଯେସନେ ମାତ୍ତକ ନୋହଇ ବିରୋଧ ।
ତାଙ୍କ ବିଭ୍ରବଧି ଯନ୍ତ୍ରୁଁ ସରିଲ
ତାହା ଦେଖି ସଖୀ ଅପସରିଲ ।
କାମୀ କାମିନୀ କୋଳରେ ବସାଇ
ତାକୁ ଉତ୍ସୁକ ଲଜରେ ମିଶାଇ ।
ତାର ତରଳ କୁଟିଳ ଅପାଙ୍ଗ-
ଫାନ୍ଦେ ପଡ଼ିଲ କି ଶିଶୁ-କୁରଙ୍ଗ । ୪
କସ ବୋଲିବ ତାହା ପାସୋରିଲ
ତନୁ ସଂକୋଚ ଲଜ ପ୍ରସରିଲ ।
ମୁଖ ଦେଇଣ୍ଟି ବଲ୍ଲଭ ଉଦରରେ
କି ଏ ଶଶୀ ପଶିଲ ସମୁଦ୍ରରେ ।

---

୨ । ଅପସରିଲ—ଘୁଞ୍ଚିଗଲ; ୪ । ତରଳ—ଚଞ୍ଚଳ; ଶିଶୁକୁରଙ୍ଗ—ହରିଣଛୁଆ; ୫ । ପ୍ରସରିଲ—ଘୋଟିଗଲ; ୬ । କି ଏ.... ସମୁଦ୍ରରେ—ଉଷା ଅନିରୁଦ୍ଧଙ୍କ କୋଳରେ ମୁହଁ ଲୁଚାଇବା ଚନ୍ଦ୍ରଙ୍କର ସମୁଦ୍ରରେ ବୁଡ଼ିବା ପରି ହେଲ । ଉଷାଙ୍କ ମୁଖ ଚନ୍ଦ୍ର ପରି; ଅନିରୁଦ୍ଧଙ୍କ ବର୍ଣ୍ଣ ସମୁଦ୍ର ର

ତନ୍ନ ପୁଲକ ଉଠେ ଘନ ଘନ
କମ୍ପେ ଅଧର ଉରଜ ଜଘନ ।
ତନ୍ନ ଶିଥିଳ ବାଣୀ ଅଶକତ
ଖସେ ବଦନ କଷ୍ଟିରୁ ତୁଟତ । ୮
ତାର ସଂକୋଚ ଘୁଞ୍ଚ ଜଳନିଧି
ତହିଁ ଘୋଟିଲା ଅନିରୁଦ୍ଧ ବୁଦ୍ଧି ।
ଅତି ଆତୁରେ ବଚନ କାତର
କ କ କହି ହୁଣ୍ଡେ ଗୁଣ୍ଠ୍ ଉତ୍ତର ।
ମୋତେ ରଖ ରଖ ପ୍ରାଣ-ସଙ୍ଗାତ !
ତୋର ଶରଣେ ନୋହୁ ଅପଘାତ ।
ତୋର ଅମଳ-କଳାନିଧି-ମୁଖ
ମୋତେ ମଦନ-ଅନ୍ଧକ'ରୁ ରଖ । ୧୨
ସଖି ! ହସି କହ ମୃଦୁ ବଚନ
କାମ-ତାପକୁ ପୀୟୁଷ ସେଚନ ।
କହୁଁ କହୁଁ କହିବାରେ ହୁଡ଼ିଲା
ଭୁଜେ ତୋଳ ଧରି ହୃଦେ ଭିଡ଼ିଲା ।
ତହୁଁ ଲଲନା ଲୋଚନ ଫେଡ଼ିଲା
ସୁର-ସାଗରେ ବିବେକ ବୁଡ଼ିଲା ।
ଭୁଜେ ଭୁଜେ ଆଲିଙ୍ଗନ ପଡ଼ିଲା
ଶିଶୁଭାବ ଅନଙ୍ଗ ଓଡ଼ାଇଲା । ୧୬

---

ବର୍ଣ୍ଣି ପରି କୃଷ୍ଣ; ୭ । ଉରଜ—କୁଚ; ୮ । ଶିଥିଳ—ଢାଳିଆ; ଅଶକତ—କ୍ଷୀଣ; ୧୧ । ଅପଘାତ—ଅନିଷ୍ଟ; ୧୨ । ଅମଳ-କଳାନିଧି-ମୁଖ—ଅକଳଙ୍କ ଚନ୍ଦ୍ର ପରି ମୁହଁ ; ୧୫ । ଲଲନା—ରମଣୀ; ଫେଡ଼ିଲା—ଫିଟାଇଲା ।

କାମଜଳେ ତନୁ ବୁଡ଼ ଗୋପାଙ୍କେ
କର୍ଣ୍ଣ ସୀତ୍କାରେ କୋଳ ନ ମୁଞ୍ଚେ ।
ନବଘନେ କି ନଷ୍ଟଳ ବିଜୁଳ
ମାଳ କଷଟି ଯେହ୍ନେ ହେମ ଝଳ ।
ପୁଣି ଅଙ୍ଗନା ଚୁମ୍ବିଲ ଅଜାଗେ
ଟେଣୁ କାମୀ ହୃଦରେ କାମ ଜାଗେ ।
ତାଙ୍କୁ ଅଧର-ମଦର ବାଧିଲ
କାମଲଜ ବଇଷ୍ୱ କି ସାଧିଲ । ୨୦
ନାନା ବନ୍ଧେ ରତିରଙ୍ଗେ ରସିଲେ
କାମକଳା କୁଶଳ ଦରଶିଲେ ।
ଅତି କୁଶଳ କାମଶାସ୍ତ୍ର ଫଳ
ତାଙ୍କ ପକ୍ଷରେ ହୋଇଲ ସଫଳ ।
ସେ ଯେ କୁମାଷ୍ୱ କୁଞ୍ଚିତ ଲୋଚନ
ଖର ନିଶ୍ୱାସ ତନୁ କମ୍ପେ ଘନ ।
ଆଳିଙ୍ଗନୁ ଶିଥିଳ ମୃଦୁ କର
ଓଷ୍ଠ ନୀରସ ଲୁଳିତ ଚିକୁର । ୨୪
ପୋଛି ହୋଇଲ ଲୋଚନ ଅଞ୍ଜନ
ଝାଳେ ଲିଭିଲା କପାଳୁଁ ଚନ୍ଦନ ।
ନଖ ଦଂଶନ ଲେଖିତ ପ୍ରକଟେ
ସ୍ୱେଦବିନ୍ଦୁ ନିଚସ୍ତ କୁଚତଟେ ।

---

୧୭ । ସୀତକାର—ସୀତ୍କାର, ଇଷି ଇଷି କହିବା; ୧୮ । ହେମ ଝଳ—ସୁନାର ଶୋଭା; ୨୦ । ମଦର—ମଦ୍ୟ; ୨୧ । ଦରଶିଲେ—ଦର୍ଶାଇଲେ, ଦେଖାଇଲେ; ୨୪ । ଶିଥିଳ—ଢିଗୁଲା, ନୀରସ—ଶୁଷ୍କ, ଲୁଳିତ ଚିକୁର—କେଶ ଫିଟି ଲେଟିଲି; ୨୬ । ସ୍ୱେଦବିନ୍ଦୁ ନିଚସ୍ତ—ଝାଳ

କରିକୁମ୍ଭ ବିଦାରି ମୃଗପତି
କେସ୍ୱେ ଗୁଡ଼ି ଯାଇଛି ଗଜମୋତି ?
ମାନ ଅଳକା ଲୁଚେ ସ୍ୱେଦ-ଭଳେ
ଇନ୍ଦୁବିମ୍ବ କି ତେଜି ରାହୁ ଗଲେ ? ୨୮
ତାହା ଦେଖି ନିବର୍ତ୍ତିଲା ମନୋଜ
ବାମ ସଙ୍ଗତେ ଆବୋରିଲା ଲାଜ ।
ଚିର ବିରହେ ଗୁରୁ ମନୋରଥ
ତହିଁ ସମାନ ସୁବେଧ ସୁରତ ।
ତହୁଁ କ୍ଷଣକେ ଜାତ ପଞ୍ଚ ରସ
ତାହା ବଚନେ କେହୁ କରେ ଶେଷ ।
ତହୁଁ କହୁ ଚତୋଇ ଚିରକାଳେ
ଚିତ୍ତ ଚମକେ ରାମା ଲାଜଭୋଳେ । ୩୨
ମୁଁ ତ କି କି କଲି କି କି ବୋଇଲି
କାନ୍ତ କି କି କଲେ ତାହା ସମ୍ଭଳି ।
ବାବୁ ଦଇବ କାମ ବିଡ଼ମ୍ବଣ
ତହୁଁ ହରଷ ଜାତ ହୋଯ୍ୟେ ପୁଣ ।
ସେ ଯେ କୁମରରମଣୀ-ଶିରୋଭୂଷା
ଚନ୍ଦ୍ର କିରଣେ କୋଳେ ବସି ଊଷା ।
ନିଜ ଦୁକୂଳେ ବିଞ୍ଚେ ମନ୍ଦ ମନ୍ଦ
କରେ ପୋଛଇ ମୁଖ-ଅରବିନ୍ଦ । ୩୬

---

ଚୋପାସରୁ; ୨୭ । କରିକୁମ୍ଭ—ହାତୀମୁଣ୍ଡରେ ଥିବା କୁମ୍ଭ; ମୃଗପତି—ସିଂହ; ୨୮ । ଅଳକା—କପାଳରେ ପଡ଼ିଥିବା ଚୂନଚୂନିଆ ବାଳ; ୨୯ । ମନୋଜ—କନ୍ଦର୍ପ; ୩୦ । ସୁବେଧ—ଅତି ଗାଢ଼; ୩୨ । ଚିରକାଳେ—ବହୁ ସମୟରେ; ଚତୋଇ—ଜାଣିପାରି; ୩୪ । ବିଡ଼ମ୍ବଣ—ବିଚିତ୍ର ଘଟଣା; ୩୬ । ଦୁକୂଳ—ପାଟ ଶାଢୀରେ; ଅରବିନ୍ଦ—ପଦ୍ମ;

ତାଙ୍କୁ ସୁବେଶ କରେ ଅନୁସର
ଶିରେ ରଞ୍ଜିତ କୁଟିଳ କବରୀ ।
ତହିଁ ତରଳତର ମୋତିଲତା
କାମ ଜିଣିଲା କି ପଣ-ବନିତା ?
ଦିବ୍ୟ ବସନ କଟି ଆଚ୍ଛାଦିଲା
ରତିକଳା ଭରି କି ତା ମୁଦିଲା ?
ଗଣ୍ଡେ ମକରୀ ମୃଗମଦ ଜ୍ୟୋତି
କର୍ଣ୍ଣେ ତାଟଙ୍କ ନାସେ ଗଜମୋତି । ୪୦
ତହିଁ ଚୁମ୍ବଇ ଅଧର ପଙ୍କିଳ
କି ସେ ଗୁରୁ ମିଳଲେ ଶଶିକୋଳ ?
କରେ କଙ୍କଣ କଣ୍ଠରେ ମୁକୁତା
ଭାଲେ ସିନ୍ଦୁରବିନ୍ଦୁ ଗୃହୁ ଶତା
ପୀନ କୁଚରେ ପତ୍ରାବଳୀ ଲିହି
ତହିଁ ମନକୁ ଥୋଇଲା ଲୁଚାଇ ।
ତନୁ ଜଣାଇ ସବୁ ପରିମଳ
ତହିଁ ଚନ୍ଦନ ଭୂଷିତ କି ଫଳ ? ୪୪
ନାନା ଭୂଷଣ ଶରୀରେ ଖଞ୍ଜିଲା
ପାଦେ ମର୍କତ ନୂପୁର ରଞ୍ଜିଲା ।

---

୩୭ । କବରୀ—ଖୋସା; ରଞ୍ଜିତ—ରଚିତ; ୩୮ । ଜୁଡ଼ାରେ ଡଳ ଡଳ ଦିଶୁଥିବା ମୁକ୍ତା ଝଞ୍ଜା ହୋଇଥିଲା । ବନିତା—ସ୍ତ୍ରୀ; ୪୦ । ମୃଗମଦ କସ୍ତୁରୀ; ଗଜମୋତି—ଗଜମସ୍ତକରୁ ବାହାରିଥିବା ମୁକ୍ତା; ୪୧ । ଗୁରୁ—ବୃହସ୍ପତି; ପଙ୍କିଳ—ସୁନ୍ଦର; ୪୩ । ପତ୍ରାବଳୀ—କୁଙ୍କୁମ କସ୍ତୁରୀ ପ୍ରଭୃତି ଦ୍ୱାରା ଶରୀରରେ ପତ୍ରାଦିର ଚିତ୍ର; ୪୪ । ପରିମଳ—ସୁଗନ୍ଧ । ଦେହରେ ସୁଗନ୍ଧ ଥିବାରୁ ଚନ୍ଦନ ଲେପିବାର ଆବଶ୍ୟକତା ନ ଥିଲା; ୪୫ । ମର୍କତ—

ତାର ସ୍ୱଭାବେ ପଦତଳ ରଙ୍ଗ
ତଥି ଅଙ୍କିତ ଅଳତା ସୁରଙ୍ଗ ।
ନହେ ଆନନ-ଜ୍ୟୋତି ବିକଶିଲା
ଯହିଁ ପ୍ରଣାମ ସୁମନ ହସିଲା ।
ଦିବ୍ୟ ମୁକୁରେ ଯହିଁ ପ୍ରତିବିମ୍ବ
ତହିଁ ସାଯୁଜ୍ୟ ଭାବେ ଦେଲା ଚୁମ୍ବ ।
ଯହିଁ ସ୍ମିତବଦନୀ ଶିର ପୋତି
ତାହା ବଚନେ କେ କହିବ ତେତି ।
ଅପସରିଲା କାମ ଲେଉଟିଲା
ତାହା ଭାବ ଅବୟବ ଯୋଟିଲା ।
କଏ ସୁବେଶ ଯହିଁ ରତିପତି
ପୁଣି ଶଙ୍କର ଜଣିମାକୁ ମତି ।
ତହିଁ ବିକାର ଉପୁଜିଲା ଯେତେ
ସବୁ ଦିନକୁ ରହୁ ସେତୁ ଚିତ୍ତେ । ୫୧
ଯୁଗ ଯୁଗାନ୍ତେ କେହୁ ପାସୋରିବ
ସେ ଯେ ବିଷୟ ବିବେକ ହରିବ ।
ଶିଶୁଶଙ୍କର ଅତି ତୁଚ୍ଛ ମତି
ତାର ଶରଣ ଯହୁଁ ଗୋପୀପତି ।
ତହୁଁ ଚଗୋଇ କହେ କିଛୁ ରସ
ଆଠ ଗ୍ରନ୍ଥ ଏ ଉଷା-ଅଭିଳାଷ !

---

ଛନ୍ଦ ନୀଳମଣି; ୪୭ । ଆନନ...ଜ୍ୟୋତି ବିକଶିଲା—ମୁଖର କାନ୍ତି ପ୍ରକାଶିଲା; ୪୮ । ମୁକୁର—ଦର୍ପଣ; ପ୍ରତିବିମ୍ବ—ପ୍ରତିଛବି, ଛାୟା; ୪୯ । ସ୍ମିତବଦନୀ——ଦରହାସ ଥିବା ମୁହଁ; ୫୦ । ଚଗୋଇ—ଚନ୍ତା କରି; କିଛୁ—କିଛି ।

# ନବମ ଛାନ୍ଦ

ବାଣୀ—ବଙ୍ଗଳାଶ୍ରୀ

ଯୁବତୀ-କୁଳ-ଶିରୋମଣି ସୁବେଶ, ପୁରୁଷ-ଭୂଷଣ ବୀର
ଚନ୍ଦ୍ର କରଣେ ମଣିମୟ ପଲଙ୍କେ, ଚିବୁକେ କମଳ-କର ।
ବିଧୁବଦନୀ ବ୍ରୀଡ଼ାରେ ହେଟମାଥ, ଦେଖିଣ ମଦନ ମତ୍ତେ
ବିନୟସ୍ୱରେ ମନସିଜ-ନନ୍ଦନ କହଇ ଗୃଷ୍ଟୁ ଅଗ୍ରତେ ।
ଚନ୍ଦ୍ରଶାଳା ପୁରେ ଶୋଇଥିଲୁ ପ୍ରିୟେ ଗଜଦନ୍ତ-ପଲଙ୍କରେ
ପୂର୍ବ ତପବଶେ ଚକ୍ଷୁ ମୋ ପଡ଼ିଲା ତୋ କୁଚ ରସକୂପରେ ।
ନିଦ୍ରାଗତ କାମ ପ୍ରବୋଧ କରଇ ଯେବଣ ନୂପୁରଧ୍ୱନି
ସପନେ ଶୁଣି ମୋ ସଫଳ ଶ୍ରବଣ ମତ୍ତ-ମରାଳ-ଗମନୀ । ୪
ପୀୟୂଷ-ରସଜ କୁବଳୟ ଦଳ ବିନ୍ଧିଲୁ ଅପାଙ୍ଗଘାତେ
ବନ୍ଧୂକ ଅଧରେ ମଧୁର ହାସ ମୋ ଥୋଇଲୁ ହୃଦୟଗତେ ।

---

୧ । ଯୁବତୀ-କୁଳ-ଶିରୋମଣି—ରମଣୀମାନଙ୍କରେ ଶ୍ରେଷ୍ଠା; କମଳକର—ହସ୍ତପଦ୍ମ; ୨ । ବିଧୁବଦନୀ—ଚନ୍ଦ୍ରବଦନା; ବ୍ରୀଡ଼ା—ଲଜ୍ଜା; ୩ । ଗଜଦନ୍ତ—ହାତୀଦାନ୍ତରେ ତିଆରି; ୪ । ମତ୍ତ-ମରାଳ-ଗମନୀ—ମତୁଆଲା ହଂସ ପରି ଗତି ଯାହାର; ନିଦ୍ରାଗତ—ଶୋଇଥିବା; ପ୍ରବୋଧ କରିବା—ନିଦରୁ ଉଠାଇବା; ୫ । ପୀୟୂଷ-ରସଜ—ଅମୃତ ତୁଲ୍ୟ ଜଳରୁ ଜାତ; କୁବଳୟ ଦଳ—ନୀଳକଇଁର ପାଖୁଡ଼ା; ବନ୍ଧୂକ—ବନ୍ଧୁଲି ଫୁଲ ସଦୃଶ;

ମଦନ ଅଳସ ହୋଇ ବାଇ କର କବଗ୍ଧରେ ଦେଲୁ ଖିରୁ
ନବଘନକୁ ଆଲିଙ୍ଗନ କଲା କି କମଳ ହେମଗିରିରୁ ।
ଅଙ୍ଗପତନୀ ମନ୍ଦ ବାୟେ ଉଡ଼ ମୋ ଜଗତୀ-ଶୋଭି-ବନିତା
ସ୍ଫଟିକସୁନ୍ଦର ଗିରିଶିଖରେ କି ଝଟକେ ତଡ଼ିତଲତା ।
ହୃଦୟ ମାନ-ସରୋବର ସୁଗନ୍ଧ କନକ କମଳମୁଖ
କୁରଙ୍ଗ ମଦେ ଭୃଙ୍ଗ ବାଢ଼ ଦେଲା କି ଇନ୍ଦୁବରେ ରାହୁରେଖ । ୮
ଚନ୍ଦ୍ର ଭ୍ରାନ୍ତେ ମଣି ଲୋଭେ ବସିଲେ କି ଚକୋର ବେନି ଲୋଚନ
ସବୋଧ ଛାଡ଼ି ନବ ଶଶୀ ଶରଣ ତେଣୁ ପାଇଲା ମୋଚନ ।
ମୋ ମନେ ମଣିଲି ଭ୍ରୂଲତା କୋଦଣ୍ଡ ସନ୍ଧିଣ କଟାକ୍ଷ-ବାଣ
ବସନ୍ତ ସହିତ ବିଜୟ କଲେ କି ପ୍ରତକ୍ଷେ ଦେବ ମସ୍ତ୍ରାଣ ।
ଅଧର ବନ୍ଧୂକ, ଦାଡ଼ିମ୍ବ ଦଶନ, ବାସନ୍ତୀ ଲପନ ବାସ;
ତିଳ କୁସୁମ-ନାସା ବାଣ ଭରତି ଥୋଇଅଛି ନିଜ ପାଶ ।

---

୭ । ବାଇ — ବାଉଳୀ; କବରୀ — ଖୋସା; ଖିରୁ—ଯୁବତୀ । ଏଠାରେ କବରୀ ସହିତ ନୂତନ ମେଘର, ଦେହ ସହିତ ହେମଗିରିର ଓ ହାତ ସହିତ କମଳର ତୁଳନା; ୭ । ଅଙ୍ଗପତନୀ—ଦେହର ଶାଢ଼ୀ; ମନ୍ଦ ବାୟେ — ଧୀର ପବନରେ; ଜଗତୀ-ଶୋଭି-ବନିତା—ପୃଥିବୀର ଶୋଭାରୂପିଣୀ ଯୁବତୀ; ୮ । କନକ—ସୁନା; କୁରଙ୍ଗମଦ—ମୃଗମଦ କସ୍ତୁରୀ; ଏଠାରେ ଉଷାର ହୃଦୟକୁ ମାନସରୋବର, ତାର ମୁଖକୁ ସୁଗନ୍ଧ ସ୍ୱର୍ଣ୍ଣପଦ୍ମ, କସ୍ତୁରୀରେଖାକୁ ଭୃଙ୍ଗ ସହିତ ତୁଳନା । ଇନ୍ଦୁବର—ପୂର୍ଣ୍ଣଚନ୍ଦ୍ର; ରାହୁରେଖା— (ରାହୁର) କଳାଗାର । ୯ । ଉଷାମୁଖ ଓ ଚନ୍ଦ୍ର ଉଭୟେ ସମାନ; ତେଣୁ ଚକୋର କାହିଁରେ ବସିବ, ସନ୍ଦେହ କଲା । ଶେଷରେ ସନ୍ଦେହ ଛାଡ଼ି ନୂଆ ଚନ୍ଦ୍ର ଭଳି ଉଷାମୁଖରେ ଆଶ୍ରୟ ନେଲା । ( ଆଖି ଦୁଇଟି ହେଲେ ଚକୋର ); ୧୦ । କୋଦଣ୍ଡ — ଧନୁ; ସନ୍ଧିଣ—ସନ୍ଧାନ କରି; ମସ୍ତ୍ରାଣ —ମଦନ, କାମଦେବ । (ଭ୍ରୂଲତା ହେଲା ଧନୁ, କଟାକ୍ଷ ହେଲା ବାଣ ); ୧୧ । ବନ୍ଧୂକ — ବନ୍ଧୁଲିଫୁଲ; ଦାଡ଼ିମ୍ବ ଦଶନ— ଡାଳିମ୍ବ

କୁଟିଳ କୁନ୍ତଳ କବରୀ ଉପରେ ଶୋଭିତ ମୁକୁତାଜାଲି
ବସନ୍ତ ମତ୍ତେ ଛୁରଅଛା ଫୁଟିଲା କି ନୀଳ ତମାଳ-ବଲ୍ଲୀ । ୧୨
କର୍ଣ୍ଣ ଅବତଂସ କିଂଶୁକ ପରସ୍ପେ ଶ୍ରବଣପୃଷ୍ଠ ପାଟଳୀ
କମଳ କାଚ ବେଣ୍ଟୋଲି ସେବନ୍ତୀ କି ଦେଖି ମୋର ମନ ଛଳ ।
ସୁରଭି ପବନ ନିଶ୍ୱାସେ ଅନ୍ତି କି କିଶଳୟ କର ପାଦ
ମେଖଳା ଘଣ୍ଟି ନାଟେଶ୍ୱର କଟି କି ନୂପୁର ମଧୁପ ନାଦ ।
ନାସା ଗଜମୋତି ମଲ୍ଲୀ କଳୀ ପ୍ରତି ସୁସ୍ୱର ବାଣୀ କୋକିଳ
କଳେବର କାନ୍ତି ଶିରୀଷ କେତକୀ, ମୃଣାଳ ବାହୁ ଯୁଗଳ ।
ରସାଳ-ନବ-ମୁକୁଳ କରରୁହ ଦେଖି ମୋ ଚକିତ ମନ
ସଧୀରେ ଗୃହଁାନ୍ତେ ହୃଦରେ ପଡ଼ିଲା ମୋହ ବିଶିଖ ଲୋଚନ । ୧୬
ଲୋଉଠାଇ ଭ୍ରୂ ତା ନେଇ ନ ପାରିଲୁ ଓଠାରନ୍ତେ ଲାଗେ ପ୍ରାସ
ସ୍ନେହ-ସୁଧା-ରସେ ରସିଥିଲୁ ବୋଲି ଜୀବନ ନ କଲୁ ନାଶ ।
ଦମ ଦମ ତନୁ ପୁଲକ ଉଠିଲା ଅଧର ଶୁଖିଲା ମୋର
ପଡ଼ି ନ ଶୁଣିଲି ପାଠ ପାସୋରିଲି ପରସ୍ପେ କଲି ଗୋଚର ।
ଉପାସ୍ପେ ନାହିଁ ମୁଁ କି ବୃଦ୍ଧି କରିବି ଦଇବେ ହରିଲା ବୁଦ୍ଧି
ପଲଙ୍କ ତେଜି ଉଦବେଗେ ଉଠିଲା ତରୁଣୀ କରୁଣାନିଧି ।

---

ସୀଜପର ଦନ୍ତ; ଲପନ ବାସ—ମୁଖର ସୁଗନ୍ଧ; ଘରଟା—ଶରମୁଣ୍ଡା; ୧୨ । ତମାଲବଲ୍ଲୀ—ତମାଲ-ଲତା; ୧୩ । ଅବତଂସ—କାନର ଅଲଙ୍କାର; କିଂଶୁକ—ପଲାଶ ଫୁଲ; ବେଣ୍ଟୋଲି—ଅଲଙ୍କାର ବିଶେଷ; ୧୪ । ସୁରଭି—ସୁଗନ୍ଧ; କିଶଳୟ—କୋମଳ ନୂଆପତ୍ର; ମେଖଳା—କଟିସୂତ୍ର; ମଧୁପ—ଭ୍ରମର । କଳେବର...କେତକୀ—ଶରୀର ଶିରୀଷଫୁଲ ପରି କୋମଳ ଓ କେତକୀ ପରି ଗୌରବର୍ଣ୍ଣ । ମୃଣାଳ—ପଦ୍ମନାଡ଼; ୧୬ । କରରୁହ—ନଖ; ମୋହ... ଲୋଚନ—ମୋହ କରି ଦେଉଥିବା ଶରତୁଲ୍ୟ ଆଖି; ୧୭ । ପ୍ରାସ—ବେଦନା; ୧୯ । ତରୁଣୀ କରୁଣାନିଧି—ଦୟାବତୀ ତରୁଣୀ;

କର ଥରହର ସ୍ଖଳିତ ଗତି ତୋ ଚରଣେ ପଡ଼ିବା ବେଳେ
ମୋ ଦେହେ ଚେତନା ନାହିଁ ପ୍ରାଣବନ୍ଧୁ ! ଭିଡ଼ିଲୁ ଭୁଜଯୁଗଳେ । ୧୦
ପଲଙ୍କ ଉପରେ ନେଇ ବସାଇଲୁ ଲଜହିଁ ଦୂର କରଣ
ଲପନ ଗୃହିଁ ତୋ ସଫଳ କଲା ମୋ ମଦନ-ନନ୍ଦନ ପଣ ।
ଅମୃତ ଭୋଜନ ସ୍ୱାଦ ମୁଁ ନିନ୍ଦିଲି ଅଧରମଧୁର ପାନେ
ମଧୁପ ମାଳତୀ ଭାବ ମୁଁ ଜାଣିଲି ଏ ତୋର ଗଣ୍ଡ ଚୁମ୍ବନେ ।
ତ୍ରିଭୁବନ-ନାଥ କୋଳରେ ବସି ମୁଁ ନିରନ୍ତରେ କରେ ରଙ୍ଗ
ସେ ଫଳ ସୁଫଳ ହୋଇଲା ସଜନି ! ଲଭିଲି ତୋ ଅଙ୍ଗସଙ୍ଗ ।
ମଦନ ରେଷେ କରିକୁମ୍ଭ-କୁଚକୁ କରଜେ କଲୁ ପାଟଳ
ପୀଡ଼ା ପାଉ ବୋଲି ନିର୍ଦ୍ଦରେ ଭିଡ଼ିଲ ନ ଛାଡ଼ିଲ ଚିରକାଳ । ୧୪
କାହିଁ ଅଛି ତାକୁ ଦେଖିବି ବୋଲି ମୁଁ ବସନ ହିଁ କଲି ଦୂର
ମୋହେ ନ ଜାଣିଲି ମଦନ ଭଣ୍ଡାର ମଣ୍ଡପରେ କଲ ଜୁର ।
ରତିନିମ ଯାହା ମଦନ କହିଲେ ତାହା କେମନ୍ତେ ପାସୋରି
ଚଉଷଠି କଳା ବିବିଧ ବନ୍ଧେ ତୁ ତୋଷିଲୁ ନବ ନାଗରି !
ଚିର ମନୋରଥ ପୂର୍ଣ୍ଣ କରି ତୋତେ ସୁବେଶ କରନ୍ତେ ବସି
ଚଣ୍ଡାଳ ବିଧି ବିଯୋଗ କରାଇଲା ପ୍ରଭାତ ହୋଇଲା ନିଶି ।
ବଚନ ଲୋଚନ ମନ ଏ ତିନିହେଁ ବିଷୟୁ ଭାବକୁ ଯେନି
ଦେହ ଛାଡ଼ି ମୋର ସବୁହେଁ ଅଇଲେ ତୋହ ସଙ୍ଗତେ ଭାବିନି ! ୧୮

---

୧୦ । ଖଳିତ ଗତି—ଗୁଲିଲାବେଳେ ଗୋଡ଼ ଖସିଲା । ( ଖଳିତ = ସ୍ଖଳିତ); କର ଥରହର—ହାତ ଥରିଲା; ୧୧ । ମଦନ-ନନ୍ଦନ-ପଣ—କନ୍ଦର୍ପର ପୁଅପଣ; ୧୩ । ତ୍ରିଭୁବନନାଥ—ଶ୍ରୀକୃଷ୍ଣ, ନିରନ୍ତର—ସର୍ବଦା; ୧୪ । କରିକୁମ୍ଭକୁଚ—ଗଜମସ୍ତକର କୁମ୍ଭତୁଲ୍ୟ; କରଜ—ନଖ; ପାଟଳ—ରକ୍ତିମ; ୧୫ । ଜୁର କରିବା—ଲୁଟି ନେବା; ୧୭ । ବିଧି—ବିଧାତା; ବିଯୋଗ—ବିଚ୍ଛେଦ; ୧୮ । ଭାବିନୀ—ରମଣୀ, ଯୁବତୀ; ୨୦ । ଇନ୍ଦୁ...

ପ୍ରଥମେ କାତର ଦେଖି କରି ମୋତେ ଆଶ୍ୱାସି ବୋଇଲୁ ଯାହା
ପ୍ରାଣ ରଖିଥିଲି ମନ୍ତ୍ର କରି ପ୍ରିୟେ ଜପୁଥିଲି ଯହୁଁ ତାହା ।
ଚତୁସ୍ରମଣି ଶତପଟ ଯେନ ମୁଁ ଲିହନ୍ତେ ତୋ ରୂପଲୀଳା
ଇନ୍ଦୁ ଦର୍ଶନେ ଚନ୍ଦ୍ରମଣିମତେ ମୋ ହସ୍ତୁ ସ୍ୱେଦ ଗଳିଲ ।
ବିଧାତା ଗଢ଼ିଲା ତୋତେ ନ ଦେଖଇ ଯହୁଁ ସମ ନାହିଁ ଆନ
ଧଇଲେ ଶତେ ଧଣିବା ନୁହଇ ତ ମୋରେ ନ ଗଲା ଲେଖନ ।
ଲୋଚନପୂରେ ମୁଁ କିଛି ନ ଦେଖଇ ଦେଖଇ ତୋ ରୂପରେଖା
ଦରହାସ ହୋଇ ମୁଖ ତୋଳ ପ୍ରିୟେ ! ପ୍ରସନ୍ନ ସଦୟେ ଦେଖା । ୩୨
ଅବନୀ ତପ ଏତେକେହେଁ ସଫଳ ମୋତେ ଚାହୁଁ କି ନା କ୍ଷଣେ
ବଲ୍ଲଭ ଚାଟୁ ଶୁଣିଣ ବାମା ହସି ଚାହିଁଲା ନୟନକୋଣେ ।
ବାଳାର ସ୍ନେହ ରଜନୀ ପରକାର ଲଜ ଅନ୍ଧାରେ ମିଳଣ
ପ୍ରଣୟ ଚାଟୁ ଚଟୁଳ ଚନ୍ଦ୍ରେ ତାହା ପ୍ରକାଶେ ଚତୁର ଜନ ।
ଲଜ-ତମ ଛୁଟି ପ୍ରକାଶ ହୋଇଲେ ଦିଶଇ ଗମନ ବାଟ
ଅଗମ୍ୟ ଭୂମିକି ଗମନ୍ତ ରସିକେ, ଫିଟଇ କାମ-କବାଟ !
ଏଥୁ ଅନନ୍ତରେ ଶଙ୍ଖ ଧ୍ୱନି ଫୁରେ, ତାମ୍ରଚୂଡ଼ କରେ ଧ୍ୱନି
ନିତ୍ୟକର୍ମ ସାରି ପଲଙ୍କେ ବିଜୟେ କୁମର ସଙ୍ଗେ କାମିନୀ । ୩୬
ଚିତ୍ରଲେଖା ସଈ ବିଶ୍ୱାସ ପୀରତି ବହୁତ ପ୍ରଶଂସା କରି
ଦ୍ୱାରି ନିରୂପଣ ତାହାରେ ବିହିଲେ ଜଗିଲା ସେହୁ ପାହାରି ।

---

ଗଳିଲ—ଚନ୍ଦ୍ରଙ୍କୁ ଦେଖି ଚନ୍ଦ୍ରକାନ୍ତ ମଣି ତରଳିଲା ପରି ମୋ ହାତରୁ ଝାଳ ବୋହିଗଲା; ୩୨ । ପୂର—ପ୍ରବାହ; ଲୋଚନ ପୂର—ଲୁହଧାରରେ ପୁଅରେ; ୩୪ । ରମଣୀର ସ୍ନେହ ହେଉଛି ରାତି ପରି, ଲଜ ହେଉଛି ଅନ୍ଧାର ପରି, ପ୍ରେମମୟ ଚାଟୁବାଣୀ ହେଉଛି ଚନ୍ଦ୍ର ପରି । ଚନ୍ଦ୍ର ଉଇଁଲେ ଅନ୍ଧାର ଚାଲିଗଲା ପରି ପ୍ରେମିକର ଚାଟୁବାକ୍ୟରେ ପ୍ରେମିକାର ଲଜ ଦୂର ହୁଏ; ୩୬ । ଫୁରେ—ସ୍ଫୁରେ; ଶଙ୍ଖଧ୍ୱନି ଫୁରେ—ଶଙ୍ଖରେ ଶବ୍ଦ

ରମଣୀ ରଞ୍ଜନ ଅମୃତ ଯୋଗାଡ଼ ମଣୋହି କଲେ କୁମର
କର୍ପୂର ତାମ୍ବୂଳ କୁଙ୍କୁମ ଲେପନ ଉଚିତ ବିଧି ବେଭାର ।
ଏମନ୍ତେ କେତେହେଁ ଦିବସ ବଞ୍ଚିଲେ ବିବିଧ ବିଳାସ ରଙ୍ଗେ
ଏକତାରେ ଚକ୍ଷୁ ତାଙ୍କି ନ ପାରିଲେ ମନ ଗରୁ ଅନୁରାଗେ ।
ହର-ରିପୁ-ତାତ ହରଣ-ରଞ୍ଜନ-ଲୋଚନ କମଳାପତି !
ଶିଶୁଶଙ୍କର ତବ ପାଦେ ଶରଣ ଫେଡ଼ ହେ ମୋର ଦୁର୍ଗତି । ୪୦

---

ଶୁଣାଯାଏ, ତାମ୍ରଚୂଡ଼—କୁକ୍କୁଡ଼ା; ୩୭ । ଦ୍ୱାର ନିରୂପଣ...ପାହାନ୍ତି—ଚନ୍ଦ୍ରଲେଖାକୁ ଦ୍ୱାର ଜଗିବାକୁ କୁହାଯିବାରୁ ସେ ପ୍ରହରୀରୂପେ ରହିଲା; ୩୯ । ମଣୋହି କଲେ—ଖାଇଲେ, ତାମ୍ବୂଳ—ପାନ; ୪୦ । ହର-ରିପୁ-ତାତ—ଶିବଙ୍କର ବଇରୀ ଯେ କନ୍ଦର୍ପ, ତାଙ୍କର ପିତା ଶ୍ରୀକୃଷ୍ଣ । କମଳାପତି—ଲକ୍ଷ୍ମୀଙ୍କ ପତି ବିଷ୍ଣୁ (ଅର୍ଥାତ୍ ଶ୍ରୀକୃଷ୍ଣ) ।

# ଦଶମ ଛାନ୍ଦ

## ଆଷାଢ଼ଶୁକ୍ଳ ବାଣୀ

ଏମନ୍ତେ କହୁଦିନ ହୋଏ ଶେଷ । ଗଗନ ଢାଙ୍କି ମେହୁ ପରବେଶ ।
ରବି ଶଶୀ ତାରା ନୋହେ ପ୍ରକାଶ । ପଙ୍କିଳ ମହୀ ଦାବତାପ ନାଶ ।
ତା କୁମର ଦେଖି । ପ୍ରିୟା ପଙ୍କଜ-ବଦନ ନିରେଖି ।
ଜାନୁରେ ବସାଇ କାନ୍ଧରେ ଭୁଜ । ଚିବୁକେ ଦେଇ କର-ସରସିଜ ।
ଦେଖ ଭାବିନି ବିଦ୍ୟୁ ମେଘକୋଳେ । ମତ୍ତ ମୟୂରୀ ଶିଖୀ ସଙ୍ଗେ ମିଳେ ।
ଏ ଡାହୁକ ବାଣୀ । ମଣ୍ଡୂକୀ ଆନ୍ଦ ମତ୍ତ ଯାହା ଶୁଣି ।
ନିଜ ସଦନେ ମିଳନ୍ତି ବିଦେଶୀ । ନଦୀଜଳ ଯେହ୍ନେ ସାଗରେ ମିଶି ।
ଚିର ସନ୍ତାପ ତେଜିଲେ ଚାତକ । ମେଘ ତୋଷ କଲା ସକଳ ଲୋକ ।
ଶୁଣ ଗୋ ସଜନି ! ବରଷ ଏକା ଦିବସ ରଜନୀ ।
ଘୋର ଜଳଧାରେ ଦିଶେ ନ ଦିଶେ ।
ବାର ନୋହେ କେହୁ ରାତ୍ରିଦିବସେ ।
ଚନ୍ଦ୍ରକୁ ନ ଦେଖି ଚକୋରୀ ଦୁଃଖୀ ।
ଯାଦବେ ତେସନେ ମୋତେ ନ ଦେଖି ।
ଦେଖ ଇନ୍ଦ୍ରଚାପ । ଧରିଛି ମୋର ପିତାମହ ରୂପ । ୪

---

୧ । ମେହୁ—ମେଘ, ଦାବତାପ—ବନ-ଅଗ୍ନିର ତେଜ; ୨ । ଭାବିନି ହେ ଯୁବତି, ବିଦ୍ୟୁ—ବିଜୁଳି, ଶିଖୀ—ମୟୂର, ମଣ୍ଡୂକୀ—ବେଙ୍ଗୁଲୀ; ୩ । ନିଜ...ବିଦେଶୀ—ବର୍ଷା ଋତୁରେ ବିଦେଶୀମାନେ ନିଜ ଘରକୁ ଫେରି ଆସନ୍ତି; ୪ । ଦିଶେ—ଦିଗମାନେ, ଯାଦବ—ଯଦୁବଂଶୀୟମାନେ, ଇନ୍ଦ୍ରଚାପ

ଦେଖ କୁସୁମିତ କଦମ୍ବ ଶୋଭା । ଚୁମ୍ବନକାଳେ ତୋର ଗଣ୍ଡ ଆଭା ।
ଜଳ ଲୁଗ୍ଭ ବଢନ୍ତେ ପଙ୍କଜ । କୁଳାଙ୍ଗନାକୁ ଯେହ୍ନେ କୁଳ ଲଜ ।
ଡନ୍ତି ଜନମାନ । ସଧୀରେ ଗତ କେତକୀ ପବନ ।
ମୂର୍ଖଗଜ ଭୂମିଗନ୍ଧ ଆଘ୍ରାଣି । ତୋ ମୁଖ-ବାସ ସମତା ନ ଜାଣି ।
ଲୋଧ କୁଟଜ ମଲ୍ଲିକା ମାଳତୀ । ଲୋଭେ ଅଛନ୍ତି ମଧୁକରେ ମାତି ।
ଏ ମଣ୍ଡୂକ ବାଣୀ । କୋକିଳେ ମଉନ ହୋଇଲେ ଶୁଣି ।
ସରୋବର ତଟେ ତମାଳ ବନ । ପାରୁଣେ ଜମ୍ବୁ ଜଳ ପଡ଼େ ଘନ ।
କୁସୁମ ଲତା ଭୂମିତଳେ ଲୁଟେ । ବନ୍ଧ-ପବନେ ଉପରକୁ ଉଠେ ।
ଏ ରୁଚିର କାନ୍ତି । ନୀଳ ମେଘରେ କି ବଳାକାପନ୍ତି ।
ଏମନ୍ତେ ନାନାବିଧ ଗୃହ୍ୟୂ ଭଷି । ବଞ୍ଚିଲେ ବରଷା ଦିବସ ନଶି ।
ଶରଦ ସମୟେ ନିର୍ମଳ ନଦୀ । ମାନ ଗଲେ ଯେହ୍ନେ ମାନିନୀ ହୃଦ ।
ଚିବ ଶଶୀ ଦିଶେ । ବିପଦ ଅନ୍ତେ ସାଧୁଜନ କି ସେ । ୮
ଚନ୍ଦ୍ରଶୋଭା ଦେଖି କୁମୁଦ ବନେ । ଜଗତୀ ଉତ୍ସୁକ କାମ-ନନ୍ଦନେ ।
ଚନ୍ଦନ ଭୂଷିତ ଅଙ୍ଗେ ସୁକେଶୀ । କି ଏ ମତ୍ତ ଗଜ ଛଇଳ-ହଂସୀ ।
ତେଜ ମାନସର । ମିଳିଲେ ବିନାଥ-ସରସୀ-ତୀର ।

---

—ଇନ୍ଦ୍ରଧନୁ, ମୋର ପିତାମହ—ଶ୍ରୀକୃଷ୍ଣ, କାରଣ ଅନିରୁଦ୍ଧଙ୍କ ପିତା କାମଦେବ, ତାଙ୍କ ପିତା ଶ୍ରୀକୃଷ୍ଣ; ୫ । କେତକୀ ପବନ—କେତକୀର ଗନ୍ଧ ବହିଥିବା ପବନ । ବର୍ଷାଦିନେ କେତକୀ ଫୁଲ ଫୁଟେ; ୭ । ଲୋଧ—ଲୋଧ୍ର, କୁଟଜ—ବଣମଲ୍ଲୀ; ଏ ମଣ୍ଡୂକ...ଶୁଣି – ବେଙ୍ଗର ରବ ଶୁଣି କୋଇଲି ତୁନି ହୋଇ ରହିଲ (ଦର୍ଦ୍ଦୁରା ଯତ୍ର ବକ୍ତାରସ୍ତତ୍ର ମୌନଂ ହି ଶୋଭନମ୍); ୭ । ଜମ୍ବୁ—ଜାମୁକୋଳି, ବନ୍ଧ ପବନେ—ବିପରୀତ ଦିଗରୁ ବହୁଥିବା ପବନରେ; ବଳାକାପନ୍ତି—ବଗଧାଡ଼ି; ୮ । ଶରଦ... ହୃଦ—ମାନିନୀ ରମଣୀ ହୃଦୟରୁ ମାନ ତ୍ୟାଗ କଲେ ସେ ଯେପରି ପ୍ରସନ୍ନ ହୁଏ, ନଦୀର ଜଳ ଶରଦ ଋତୁରେ ସେହିପରି ନିର୍ମଳ ହେଲା;

ଚତୁଷ୍କ ଗୃହୁ ଚନ୍ଦ୍ରମୁଖୀ ଗୃହିଁ । ଗୃଷ୍ଠ ପ୍ରକାରେ କୁମର ବୁଝାଇ ।
ଦେଖ ସଖି ମାଳ ଭ୍ରସଳମାଳ । କୁସୁମ ତେଜ ତୋର ପାଶେ ମିଳ ।
ତା ଦେଖି ପଙ୍କଜ । ମୁଦ୍ରିତ ହୋଇଲା ମନରେ ଲଜ ।
ମନୋରମ ଯହୁଁ ନଖ ପୁଳିନ । ମୋ ମନ ହରଇ ତୋର ଜଘନ ।
ମରାଳ ଦେଖି ତୋ ନୂପୁର ନାଦ । ଗତି ହୁଡ଼ିଲା ମଉନ ବିଷାଦ ।
ଗୋ ଚକୋର ଦେଖ । ଚନ୍ଦ୍ରେ ରସିଲେ ତୋ ନ ପାଇ ମୁଖ ।
କୁମୁଦ ପାଶେ କୋକନଦ ଜ୍ୟୋତି ।
ଶେଫାଳିକା ଶୋଭା ଯୋଏନା ମୋତି ।
ରଙ୍ଗ ଶୁକ୍ଳ ବନ୍ଧୁ କଲା ଯୋଗ । ସ୍ୱଚ୍ଛ ହୃଦୟେ ସ୍ନେହ ଅନୁରାଗ ।
ପଲ୍ଲବିତ ଲତା । ବନ୍ଦିଛନ୍ତି ତୋର ଚରଣ ରତା । ୧୨
କୁନ୍ଦ ସେବନ୍ତି ମଲ୍ଲୀ କୋବିଦାର । ଇନ୍ଦ୍ର କରଣ କ ଭୂମି ଗୋଚର ।
ତୋ ମୁଖ ଶୋଭାକୁ ନ ପାରେ ଜିଣି । କରଣ ଛୁଡ଼ିଲା ଏ ନିଶାମଣି ।
ସେ ଅତି ପିଶୁନ । କଳା ଶେଷ ହୋଏ ଉଆଁସ ଦିନ ।
ଦିବସେ ପାଣ୍ଡୁର ବିକାଶେ ନଶି । ଚନ୍ଦ୍ରକୁ ନ ଦେଖି ଉଲ୍ଲୁକ ତୋଷି ।
ଦେଖି କମ୍ପେ ତନୁ ଶୁଖେ ଅଧର ଲେଉଟି ମିଳବେ ବଡଖି-ପୁର ।
ବିବିଧ ବିଳାସେ । ରଜନୀ ବଞ୍ଚିଲେ ଅତି ଉଲ୍ଲାସେ ।

---

୯ । ଜଗତି—କୋଠା; ବିଳାସ-ସରସୀ—କେଳି-ସରୋବର; ଜଳକ୍ରୀଡ଼ା ନିମନ୍ତେ ପୋଖରୀ; ୧୦ । ଭ୍ରସଳ—ଭ୍ରମର; ୧୧ । ମନୋରମ—ସୁନ୍ଦର, ପୁଳିନ—ତଟ, କୂଳ; ୧୨ । କୋକନଦ—ରକ୍ତକଇଁ, ରଙ୍ଗ...ଅନୁରାଗ—ବିଧାତା ଶୁକ୍ଳ ପାଖେ ରଙ୍ଗକୁ ଯୋଗ କରିଥାଏ । ଧଳା କଇଁ ପାଖେ ରକ୍ତ କଇଁ, ଗଙ୍ଗଶିଉଳି ଫୁଲରେ ଧଳା ପାଖୁଡ଼ା ପାଖେ ରକ୍ତ ବୃନ୍ତ (ବୃନ୍ତ ପୋହଳା ପରି ଓ ପାଖୁଡ଼ା ମୁକ୍ତା ପରି), ନିର୍ମଳ ଅନ୍ତରରେ ଅନୁରାଗ ରହିଛି; ୧୩ । କୋବିଦାର—ଧଳା କଞ୍ଚନ ଫୁଲ, ପିଶୁନ—ଅଧମ, ପାପୀ କଳା...ଦିନ—ଚନ୍ଦ୍ରର କଳା କ୍ଷୟ ପାଇ ପାଇ ଅମାବାସ୍ୟା ଦିନ କିଛି ରହେ ନାହିଁ;

ଏକ ଦିବସେ ପ୍ରାଣପ୍ରିୟା ସଙ୍ଗେ । ପଶାରେ ରସିଲେ ବିବିଧ ରଙ୍ଗେ ।
ଅନ୍ୟ ଅନ୍ୟଭାବେ କଳିତ ମନ । ହୋଉ ହୋଇଛନ୍ତି ଚୁମ୍ବ ଆଲିଙ୍ଗନ ।
ଶୁଣିମା ସୁମନ୍ତ । ଉଗର ଜଣାଇ ଶୁଣ ନୃପତି ।
ରଥରୁ ପଡ଼ିଲା ମୟୂରଧ୍ୱଜ । ଶୁଣି ସନ୍ତୋଷ ହେ ଅସୁରରାଜ ।
ହେନ ସମୟେ ଭିତର ପାହାସ୍ତା । କହିଲା କନ୍ୟାପୁରେ ରତିଶ୍ରେର ।
ତା ଶୁଣି ପ୍ରକୋପେ । ଅସୁର ଧାଇଁଲ ପ୍ରଚଣ୍ଡ ରୂପେ । ୧୬
ଦେଖିଲା ନେତ୍ରଦ୍ୱାରେ ଦିବ୍ୟରୂପ । ନୀଳମଣି ଶ୍ୟାମ ଆନନ୍ଦକୂପ ।
ପୀତ ପଟନୀ ଗଳେ ବନମାଳ । କେକପୁଚ୍ଛ ଶୋଭା ସେବନ୍ତୀଚୂଳ ।
ସ୍ୱୟଂ କୃଷ୍ଣ ଶୋଭା । ଅମଳ କମଳ ଲୋଚନ ପ୍ରଭା ।
କରକମଳ ମୃଣାଳ ପରାୟେ । କରେ ପଶାକାଠି ଦେଖିଲେ ରାୟେ ।
କୋପେ ଗର୍ଜଇ ମତ୍ତ ନାଗ ଜିଣି । ଜୀବନ ଉଡ଼ିଲା ବରତରୁଣୀ ।
ତା ଆଶ୍ୱାସ କରି । ଲୌହ ପରିଘ ବୀର କରେ ଧରି ।
ସୂର୍ଯ୍ୟମଣି ଯେହ୍ନେ ରବିକି ଦେଖି । ତେସନେ ବୀର ଦନୁଜ ନିରେଖି ।
ଝଙ୍ଗମେ ଝଙ୍ଗମ-କେଶରୀ ମତ । ବହୁତ ସୈନ୍ୟ ସେ କଲା ନିପାତ ।
ତା ପରିଘ ଘାତେ । ମୋହ ହୋଇଲା ବାଣାସୁର ରଥେ ।

---

୧୪ । ପାଣ୍ଡୁର—ପାଉଁଶିଆ, ଫିକା, ଉଲୂକ—ପେଚା (ଚନ୍ଦ୍ରକୁ ନ ଦେଖି ପେଚା ଖୁସି ହେଲା, କାରଣ ପେଚା ଦିନରେ ବାହାରେ ନାହିଁ) ବଉଳୀପୁର—ପକ୍କା ଘର ଉପରେ ଥିବା ଘର; ୧୪ । ଅନ୍ୟ ଅନ୍ୟଭାବେ—(ଅନ୍ୟୋନ୍ୟ) ପରସ୍ପର ସ୍ନେହରେ ୧୬ । ମୟୂରଧ୍ୱଜ—ମୟୂର ପୁଚ୍ଛନିର୍ମିତ ପତାକା (କାର୍ତ୍ତିକେୟ ସନ୍ତୁଷ୍ଟ ହୋଇ ଏହା ବାଣାସୁରକୁ ଦେଇଥିଲେ), ହେନ ସମୟେ—ଏହି ସମୟରେ, ପାହାସ୍ତା—ପ୍ରହସ୍ତା, ଜଗୁଆଳ, ଧାଇଁଲା—ଧାଇଁ; ୧୭ । ଆନନ୍ଦକୂପ—ଆନନ୍ଦର ଆଧାର, ପଟନୀ—ପାଟଲୁଗା, କେକପୁଚ୍ଛ—ମୟୂରପର; ୧୮ । ରାୟେ—ରଜା ବାଣାସୁର, ମତ୍ତନାଗ—ମତୁଆଲା ହାତୀ; ତା ଆଶ୍ୱାସ କରି—ତାକୁ ଅର୍ଥାତ୍ ଉଷାକୁ ଆଶ୍ୱାସନା ଦେଇ, ପରିଘ—ଲୌହ

ରାଜା କର୍ଣ୍ଣରେ କହଇ ସଚିବ । ଶ୍ରୀକୃଷ୍ଣ-ସୁତ ସୁତ ଏହୁ ଦେବ ।
ତୁ ବୀର ସିନା ସେହୁ ବୀରବର । ପାରିଲେ ଏଥି ମାୟାଯୁଦ୍ଧ କର ।
ଏ ସାମାନ୍ୟ ନୋହେ । ବାଣାସୁର କର୍ଣ୍ଣେ ସଚିବ କହେ । ୨୦
ଚେତଉଠି ପୁଣି ମନ୍ତ୍ରୀ ବଚନେ । ଆକାଶେ ପଶିଲା ମାୟା ସମାନେ ।
ନାଗ ପାଶ ବାଣେ ବାନ୍ଧଣ ତାହା । ନବରେ ପଶିଲା ମନ ଉତ୍ସାହା ।
ତା ଦେଖି ଭାବିନୀ । ତୁରିତେ ମୋହେ ପଡ଼ିଲା ଧରଣୀ ।
ଜଳ ସିଞ୍ଚି କଲା ସଚେତ ସଖୀ । ଗଦଗଦ ବାଣୀ ଚନ୍ଦ୍ରମାମୁଖୀ ।
ବେଦନ କରେ କାନ୍ତ ଗୁଣ ଗୁଣି । ଶିଶୁଶଙ୍କର ଏ ରସ ବଖାଣି ।
ଉଷା ଅଭିଳାଷ । ଦଶମ ଛାନ୍ଦ ଶୁଭେ ହୋଇଲା ଶେଷ । ୨୨

———

ଅସ୍ତ୍ରବିଶେଷ; ୧୯ । ସୂର୍ଯ୍ୟମଣି – ସୂର୍ଯ୍ୟକାନ୍ତ ମଣି (ସୂର୍ଯ୍ୟ କିରଣରେ ଏଥିରୁ ଅଗ୍ନି ପରି ତେଜ ବାହାରେ), ଦନୁଜ—ଅସୁର, ବିକ୍ରମେ—ପରାକ୍ରମରେ, ବିକ୍ରମ-କେଶରୀମତ—ବଳିଷ୍ଠ ସିଂହପରି, ନିପାତ—ବିନାଶ; ୨୦ । ସଚିବ—ମନ୍ତ୍ରୀ, ଶ୍ରୀକୃଷ୍ଣ-ସୁତ-ସୁତ—ଶ୍ରୀକୃଷ୍ଣଙ୍କ ପୁତ୍ର କାମଦେବଙ୍କର ପୁତ୍ର ଅନିରୁଦ୍ଧ, ମାୟାଯୁଦ୍ଧ—କପଟ ଯୁଦ୍ଧ; ୨୧ । ତାହା—ତାହାଙ୍କୁ (ଅନିରୁଦ୍ଧଙ୍କୁ); ଉତ୍ସାହା—ମନର ଉତ୍ସାହରେ, ଆନନ୍ଦରେ ।

# ଏକାଦଶ ଛାନ୍ଦ

## ରାଗ—ବଚଷ ଦେଶାକ୍ଷ

ପଙ୍କିଳ ବଦନ ଲୁହେ କଜ୍ଜ୍ୱଳ ଜଳେ
କର-କୋକନଦ ଦେଇ କପୋଳ ତଳେ ।
ବେଦନ କରଇ ରମା ହେଠ ବଦନ
ଅହା ବିଧି ! ଦାରୁଣ ତୁ କରୁଣାହୀନ ।
ଆହା ପ୍ରାଣନାଥ ! ଛାଡ଼ି ଗଲୁ ତୁ କାହିଁ
ଲୋଚନ ଢାଙ୍କିବା ତୁ ଯେ ନ ପାରୁ ସହି ।
ତନୁକୁ ବାଧଇ ତୋର ହଂସତୂଳ ତୂଳୀ
ଅବନୀ ସୁଆଗ କଲୁ ଶୋଇଲୁ ଧୂଳି । ୪
ଆଲିଙ୍ଗନ ଚୂଡ଼ା ସଞ୍ଚା ଦେହରେ ବସେ
କେମନ୍ତେ ସହିଲୁ ଏବେ ଉରଗ ପାଶେ ।
ନିତ୍ୟକର୍ମ ବିଧି ହୋଏ ଯେତେକ ବେଳେ
ମଦନେ ଆତୁର ହୋଇଥାଉ ବିକଳେ ।
ଚମ୍ପଟ ଲିହୁ ତୁ ଯେ ଅରଣ୍ୟ କାଳେ

---

୧ । ପଙ୍କିଳ...ଜଳେ—ଉଷା କାନ୍ଦୁଥିବାରୁ କଜ୍ଜଳମିଶା ଲୁହ ତାଙ୍କ ସୁନ୍ଦର ମୁହଁରେ ପଡ଼ିଲା, କର-କୋକନଦ—ଲାଲ କଇଁପରି ହାତ, କପୋଳ—ଗଣ୍ଡସ୍ଥଳ; ୨ । ହେଠବଦନ—ତଳକୁ ମୁହଁ ପୋତି, କରୁଣାହୀନ—ନିର୍ଦ୍ଦୟ; ୪ । ହଂସତୂଳୀ—ହଂସର କୋମଳ ପରରେ ତିଆରି ଶେଯ, ସୁଆଗ—ଆଦର; ୫ । ଆଲିଙ୍ଗନ....ବସେ—ଆଲିଙ୍ଗନ କଲାବେଳେ ଚୂଡ଼ାର ଚିହ୍ନ ଦେହରେ ରହିଯାଏ । ଉରଗ ପାଶ—ନାଗପାଶ (ଉରଗ—ସାପ);

ଏବେ ତୁ ସେ ସ୍ନେହ ନାଥ ! ଗୁଡ଼ିଲୁ ତାଳେ ।
ନିଶାକାଳେ ଚକ୍ରବାକୀ ଦେଖିଲେ ଘନ
ମୂର୍ଛିଁ ଦୁଖୀ ମୋତେ କ କେ ନୋହୁଁ ଦୟାନ୍ତ । ୮
ଜାଣୁ ନା ସପନେ ଯେବେ ହୃଦଇ ମୋତେ
ବେଦନ କରି ଉଠିଲୁ ନିଦ୍ରାର ଅନ୍ତେ ।
ନ କହି ମନେ ହସିଲୁ, ମୁଁ କଲି ମାନ
ଦାରିକା ଯୁବତୀ କ ତୋ ପଡ଼ିଲେ ମନ ।
ଚତୁର ଧରିଣ ମୋତେ ବୋଇଲୁ ଯାହା
କେମନ୍ତେ ଗୁଡ଼ିଲୁ ନାଥ ତେତେ ସେନେହା ।
ଜାଣୁ ନା ତୋଠାରେ ଯେବେ ବିନୋଦ ରତ
ଲତାରେ ଲୁଚିଲି ତୋର ଜାଣିମା ସତ । ୧୨
କାତର ସ୍ୱଭାବେ ନାଥ ! ବାତୁଳ ହୋଇ
ତରୁ ଲତା ଏକୁ ଏକ ପୁଚ୍ଛିଲୁ ଯାଇଁ ।
କୋକିଳ ବଚନ ଶୁଣି ଡାକିଲୁ ମୋତେ
ପକ୍ଷିବିତ ଲତା କୋଳ କଲୁ ଭ୍ରମତେ ।
ହରିଣୀହରିଣୀ ଦେଖି ବେଦନ କଲୁ
ମୁଁ ଯାଇଁ ପାଦେ ପଡ଼ନ୍ତେ ତୋଳି ଧଇଲୁ ।
ଶୋକମୁଖ ହୋଇ ଯାହା ବୋଇଲୁ ସାଙ୍ଗେ
କେମନ୍ତେ ତା ପାସୋରିଲୁ ବିଧି ବିଯୋଗେ । ୧୬
ନିଦ୍ରାହିଁ ବିରଙ୍ଗ ମଣୁ ମୋହୋର ପାଶେ
ଶୟନେ ଲେଉଟୁ ନାହିଁ ବିଚ୍ଛେଦ ଆଶେ ।

---

୭ । ଅରନ୍ଧ୍ର—ଅଚ୍ଛିଦ୍ର, ୮ । କକେ—କାହିଁକି; ୧୧ । ଚତୁର—ଓଠ, ସେନେହା—ସ୍ନେହ; ୧୨ । ବିନୋଦ—ଆମୋଦପ୍ରମୋଦ, କ୍ରୀଡ଼ା; ୧୬ । ବିଯୋଗ—ବିଚ୍ଛେଦ; ୧୭ । ବିରଙ୍ଗ—ବିରକ୍ତକର; ୨୦ । ମଦର—

ହୃଦରେ ଲାଗିଲା ତୋର ଅକଥା ରଙ୍ଗ
ଆଜ୍ଞା ଦେଲୁ ତୋର ସ୍ନେହେ ଶୋଭା ମୋ ଅଙ୍ଗ ।
ସୁବେଶ ସମୟେ ତୋର ହୃଦୟଦେଶେ
ଚନ୍ଦନ ନ ଲେପୁ ତନୁ ଅନ୍ତର ଆଶେ ।
ସେନେହ ମନ୍ଦର ସ୍ୱାଦ ଚଖାଇ ମୋତେ
ହରିଲୁ ଧଇର୍ଯ୍ୟ ମନ ତଇର୍ଯ୍ୟ ମତେ । ୨୦
ଯେବେ ଛୁଡ଼ିଯିବୁ କି କେ ସେନେହ କଲୁ ।
ଏକରସ କରି ମୋହ-ଜଳେ ଭରିଲୁ ।
କେଣେ ଯେ ସରଳ ବୋଲୁ ହୃଦୟ ମୋର
ତୋର ବଳୁ ରହିଅଛି ବନ୍ଧ ଆକାର ।
ବିପରୀତ ରତିକାଳେ କୁଚର ଝାଳ
ହୃଦରେ ତୋ ଜାତ କରେ ପୁଲକକୁଳ ।
ବୋଇଲୁ ଯେ କୁମ୍ଭଜଳ ସିଞ୍ଚିଲୁ ପ୍ରିୟେ
ମଦନ-ଅନଳ ଆହୁଁ ହୋଇଲା କ୍ଷୟେ । ୨୪
ଯୁବତୀ ସଂସାରେ କାମ ଖ୍ୟାତି ସରିଲା
ବିଧାତା ଆଜହୁଁ ରସକଳା ହରିଲା ।
ମଦନ-ନନ୍ଦନ ତୁମ୍ଭେ ଶ୍ରୀକୃଷ୍ଣ-ନାତି
ତୁମ୍ଭଙ୍କୁ ଅପୂର୍ବ ଅବା କଉଁ ଯୁବତୀ ।
କୁଲକ୍ଷଣୀ ସଙ୍ଗ ପାଇ ହୋଇଲୁ ନାଶ
ମଧୁପ ଯେସନେ ଗଲା କେତକୀ ପାଶ ।

---

ମଦ, ଧଇର୍ଯ୍ୟ—ଧୈର୍ଯ୍ୟ, ତଇର୍ଯ୍ୟମତେ—ସ୍ୱୈର ପରି; । ଏକରସ କରି —ଏକାନ୍ତ ଭାବରେ; ୨୨ । ପୁଲକକୁଳ—ରୋମାଞ୍ଚ ସବୁ; ୨୭ । କୁଲକ୍ଷଣୀ ...ପାଶ—ଭ୍ରମର କେତକୀ ପାଖକୁ ଗଲେ ନଷ୍ଟ ହୋଇଗଲା ପରି ତୁମେ ମୋ

ଉତପାତ ଚିହ୍ନ ଦେଖି ଦ୍ୱାରକା ଲୋକେ
କେମନ୍ତେ ବଞ୍ଚିବେ ଧନ ତୋହୋର ଶୋକେ । ୨୮
କେମନ୍ତେ ଜନମା ତୋର ଧରିବ ହିଆ
ଆହା ପ୍ରାଣନାଥ ! ମୋତେ କଲୁ ତୁ କାହା ।
ଏତେ ବୋଲି ମୋହ ଗଲା ଧରଣୀ-ତଳେ
ଜଳ ସିଞ୍ଚି ସଖୀ ତାର ଧଇଲା କୋଳେ ।
ସଚେତ କରାଇ ତାକୁ ଆଶ୍ୱାସି କହି
ପ୍ରଭୁଙ୍କୁ ଝପଟି ଚୋର ନାହିଁ ଗୋ ସହି !
ତୋହର ଅଧର-ସୁଧା କରିଛି ପାନ
ତାହାକୁ ଝପଟି ସଖି ! ମନେ ନ ଘେନ । ୩୨
ମୋହ ଯାଇଛନ୍ତି ନାଥ ଜାଣିବେ ପୁଣି
ଏଥକୁ ଆସିବେ ଆଜ ଶାରଙ୍ଗ-ପାଣି ।
ସଚେତ ହୋଇଲା ଶୁଣି ନୃପ-ଦୁଲଲୀ
କେ ଯାଇ କହିବ ଆଜ୍ଞ ଶ୍ରୀବନମାଳୀ ।
ପାପିଷ୍ଠ ପିଅର ମୋର କରନ୍ତୁ ନାଶ
ପ୍ରାଣନାଥ ଦାନ ଦ୍ୟନ୍ତୁ ଅଖିଳବାସ ।
ଝୁରଇ କୁରଣ୍ଡ ମତ ଜ୍ଞାନ ହରାଇ
ବାସୁଦେବ ସୁମରଇ ଚେତନା ପାଇ । ୩୬
କ୍ଷଣେ ମୋହ କ୍ଷଣେ କ୍ଷଣେ ରୋଦନ କରେ ।
ତନୁ-ଶୋକ-ଲତା ବଢେ ନନ୍ଦିନମାଟରେ ।

---

ପାଖକୁ ଆସି ନାଶ ପାଇଲ; ୨୮ । ହିଆ—ହୃଦୟ, ଗୁଢ, କାହା—କାହାର ୩୩ । ଶାରଙ୍ଗପାଣି—ଶ୍ରୀକୃଷ୍ଣ, ତାଙ୍କ ଧନୁର ନାମ ଶାରଙ୍ଗ, ୩୪ । ନୃପଦୁଲଲୀ—ରାଜକନ୍ୟା ଊଷା, ଅଖିଳବାସ—ଶ୍ରୀକୃଷ୍ଣ; ୩୬ । କୁରଣ୍ଡ—ପକ୍ଷୀ

ଏଥୁ ଅନନ୍ତରେ ତହିଁ ନାରଦ ଋଷି
ଦ୍ୱାରକାରେ ପରବେଶ କୃଷ୍ଣରେ ଭାଷି ।
ବାଣାସୁର ଝିଅ ଚୋର ହରିଲା ନାତି
ଜାଣିଣ ବନ୍ଧନ ତାଙ୍କୁ କଲା ନୃପତି ।
ତ୍ୱରିତେ ଛଡ଼ାଇ ବେଗେ ଅସୁର ମାର
ଶୁଣି କୋପେ ସଜ କଲେ ବଳ ଅପାର । ୪୦
ରାଜା ଉଗ୍ରସେନ ଆଦି ଯାଦବ ସାରେ
ତ୍ୱରିତେ ମିଳିଲେ ଯାଇ ଶୋଣିତପୁରେ ।
କମ୍ବୁ ଚକ୍ରଧର କୃଷ୍ଣ ଦାସର ଦାସ
ଉଷା-ଅଭିଳାଷ କହେ ଶଙ୍କର ଦାସ । ୪୧

---

ବିଶେଷ, ଏଦ୍ୱାର ରାବ ଅର୍ଥ କରୁଣ । ବାସୁଦେବ—ଶ୍ରୀକୃଷ୍ଣ; ୪୦ । ବଳ—ସୈନ୍ୟ; ଅପାର—ଅସଂଖ୍ୟ; ୪୧ । କମ୍ବୁ—ଶଙ୍ଖ ।

## ଦ୍ୱାଦଶ ଛାନ୍ଦ

ବଶ—ଚନ୍ଦ୍ରା ଭୈରବ

ଗରୁଡ଼ ପିଠିରେ ବିଜେ  ଦେବ ନାରାୟଣ
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗ କରେଣ ।
ରଥ ଗଜ ଅଶ୍ୱ ନର ଚତୁରଙ୍ଗ ବଳ
ଅଗ୍ର ସମ୍ଭରେ ବିଜୟେ ଅଖିଳ ମଙ୍ଗଳ ।
ଯୁଗ ପାରୁଶରେ ବେଢ଼ିଛନ୍ତି ସମୂହରେ
ନ ଗଛେ ଉପମା ଦେବା ଯେତ୍ତୁ ମନେ ସ୍ଫୁରେ ।
ଢମକ ନିଶାଣ ଭେରୀ ମୃଦଙ୍ଗ କାହାଳ
ବେଣୁ ବୀଣା ଶଙ୍ଖ ମିଶି ଶୁଭଇ ତହଳ ।
ଜଳଧି ମନ୍ଥନେ ଯେହ୍ନେ ଶୁଭେ ସିନ୍ଧୁଘୋଷ
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦେ ସ୍ଫୁରେ ଦଶଦିଶ ।
ମଙ୍ଗଳ ପଢ଼ନ୍ତି ଚର୍ତ୍ତି ବ୍ରାହ୍ମଣ ଅପାର
ନଟ ଭାଟମାନେ ତ କରନ୍ତି କୟେବାର ।
ଶ୍ୱେତ ଛତ୍ର ଉହାଡ଼ିଲ ଦିନକର ଜ୍ୟୋତି

୧ । ଚତୁରଙ୍ଗବଳ—ରଥାରୋହୀ, ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ ଏହି ଚାରି ପ୍ରକାର ସୈନ୍ୟ । ସମ୍ଭରେ—ଆଡମ୍ବରରେ; ନ ଗଛେ ଉପମା—ତୁଳନା ଦେବାକୁ କିଛି ସମାନ ନାହିଁ, ମନେ ସ୍ଫୁରେ—ମନକୁ ଆସେ; ୨ । ଢମକ—ବାଦ୍ୟବିଶେଷ, ନିଶାଣ—ପତାକା; ଘୋଷ ସିନ୍ଧୁ—ସମୁଦ୍ର ଗର୍ଜନ, ପାଞ୍ଚଜନ୍ୟ—ଶ୍ରୀକୃଷ୍ଣଙ୍କ ଶଙ୍ଖର ନାମ, କୟେବାର—ସ୍ତୁତିପାଠ;

କ୍ଷୀର ଜଳନିଧି କି ଲଙ୍ଘିଲା ବସୁମତୀ ।
ଚକୋର ହରଷ ହୋଏ ବିକାଶେ କୁମୁଦ
ପାଦରେଣୁ ଶାନ୍ତ ହେଲା ପଡ଼ି ଗଜ ମଦ ।
ବନ ଗିରି ନଦୀ ସବୁ ହୋଇଲାକ ସମ
ଶୋଣିତ-ପଦ୍ମବନେ ଉଦୟେ କିବା ସୋମ ।
ଚତୁରଙ୍ଗ ବଳ ଯେନ ଯୁଝଇ ଅସୁର
ଶିବଗଣ ଯେନଣ ଶଙ୍କର ଆଗଭର ।
ରାମକୃଷ୍ଣ ସାହା ପାଇ ଯଦୁବୀରମାନେ
ରଣେ ବାଣା ବଳ ପେଷି କୃତାନ୍ତ ସଦନେ ।
ହରି ହର ବେନି କଲେ ସମର ଯେ ଘୋର
ତିନପୁର ଭୟେ କମ୍ପେ, ଦେଖନ୍ତି ଅମର । ୪
ପିତାମହ ଶାନ୍ତ କରି ଛୁହାଇଲେ ଶିବ
ଜଗନ୍ନାଥ ସଙ୍ଗେ ବାଣା ଯୁଦ୍ଧ ଅସମ୍ଭବ ।
ଚଣ୍ଡ ଯେନ ହାଣନ୍ତେ ତା ରଖିଲେ ଭବାନୀ
ସେଷେ ବାହୁବଳ ଛେଦ ଛୁହାଇଲେ ବେନି ।
ଦୁର୍ଜୟ କଟକ ତାର ଜିଣି ଯଦୁପତି
ବାଣାକୁ ଜୀବନ ଦେଲେ ଶଙ୍କର ପୀରତି ।

---

୩ । ଉହାଡ଼ିଲା—ଘୋଡାଇ ଦେଲା, ଜଳନିଧି—ସମୁଦ୍ର, ପାଦରେଣୁ—ପାଦର ଧୂଳି, ଗଜମଦ—ହାତୀର ଗଣ୍ଡରୁ ଝରୁଥିବା ଜଳ, ସୋମ—ଚନ୍ଦ୍ର ଶ୍ୱେତ ଛତ୍ରରେ ସୂର୍ଯ୍ୟ ଲୁଚିଗଲେ, ତାହାକୁ ଚନ୍ଦ୍ର ମନେ କରି ଚକୋରର ହର୍ଷ ହେଲା, କଇଁ ଫୁଟିଲା; ୪ । ଶିବଗଣ—ଶିବଙ୍କର ପ୍ରମଥଗଣ, ଶଙ୍କର—ଶିବ, ରାମ—ବଳରାମ, ବାଣାବଳ—ବାଣାସୁରର ସୈନ୍ୟ, କୃତାନ୍ତ ସଦନେ—ଯମପୁରକୁ, ଅମର—ଦେବତାମାନେ, ହରି—ଶ୍ରୀକୃଷ୍ଣ, ହର—ଶିବ
୫ । ପିତାମହ—ବ୍ରହ୍ମା, ଛୁହାଇଲେ—ବନ୍ଦ କଲେ, ଜଗନ୍ନାଥ—ଶ୍ରୀକୃଷ୍ଣ,

ଅନ୍ତଃପୁରେ ବିଜେ କଲେ ଅନିରୁଦ୍ଧ ପାଶେ
ନାଗପାଶ ପଳାଇଲେ ଗରୁଡ଼ର ତ୍ରାସେ ।
ବରକନ୍ୟା ଆଣି କୃଷ୍ଣ ବସାଇଲେ କୋଳେ
ଶଙ୍ଖ ବଜାଇ ବାଦ୍ଧକ୍ତେ ପରମ ମଙ୍ଗଳେ ।
ବାଦ୍ୟ ଘନ ଘନ ରବେ ଗଗନ ପୂରିଲା
ବୈରୀ ନରପତି ପୁରେ ଚମକ ପଡ଼ିଲା ।
କନକ ଗିରିରେ ଯେହ୍ନେ ନୀଳ ନବଘନ
ଇନ୍ଦ୍ରଧନୁ କୋଳେ କି ତଡ଼ିତ ଶୋଭିବନ ।
ତେସନ ବିନତା-ସୁତ ଉପରେ ମୁରାରି
କୋଳେ ଅନିରୁଦ୍ଧ ଉଷା ଉପାମି ନ ପାରି !
ସଧୀରେ ସଧୀରେ ଚଳେ ଭୂମିଗତ ବଳ
ଉପରେ ଗଗନଗତି ବିଜେ ଆଦ୍ୟ ମୂଳ ।
ଶ୍ୱେତ ଛତ୍ର ରତ୍ନମୟ ଗଜ ବାଜୀ ଅଛି
ତେଣୁ ସେ ସଇନ ଶୋଭା ସିନ୍ଧୁ ପ୍ରାୟେ ଗଛି ।
ଗରୁଡ଼ ମୁକୁନ୍ଦ ତଥି ମନ୍ଦର ପର୍ବତ
ଲାବଣ୍ୟ-ଲକ୍ଷ୍ମୀ ଲଭିଲେ ସିନ୍ଧୁ ମନ୍ଥିବାପ୍ରେ ।
ପୂରୁବେ ଅମରେ ଲଭିଥିଲେ ଯେତେ ଯେତେ
ଏକରୂପ ଧରି ବାହାର ହୋଇଲେ ତେତେ ।     ୮

---

ଭବାନୀ—ପାର୍ବତୀ, ଦୁର୍ଜୟ—ଯାହା ଜୟ କରିବା କଠିନ; ୭ । କନକ ଗିରି—ସୁନାର ପର୍ବତ; ବିନତାସୁତ—ଗରୁଡ଼, ମୁରାରି—ଶ୍ରୀକୃଷ୍ଣ ( ଯେ ମୁର ଅସୁରକୁ ନାଶ କରିଥିଲେ ); ଉପାମି ନ ପାରି—ଉପମା ଦେଇ ପାରିବ ନାହିଁ, ଗଗନ-ଗତ—ଆକାଶରେ ଗମନ, ଆଦ୍ୟମୂଳ—ଶ୍ରୀକୃଷ୍ଣ; ୮ । ମୁକୁନ୍ଦ—ଶ୍ରୀକୃଷ୍ଣ, ମନ୍ଥିବାପ୍ରେ—ମନ୍ଥିବାରେ;

ତନୁ ଲକ୍ଷ୍ମୀ, ଦନ୍ତ ମଣି, ଲପନ ଚନ୍ଦ୍ରମା,
ଅଧର ପୀୟୂଷ, ଗତି ଗଜରାଜ ବାମା ।
ବନ୍ଧସ୍ୱବ ହୟବର, ଶୋଭା ଦର ହାସ
ଭୂଷଣ ପାରିଜାତକ, ଦୃଗଞ୍ଚଳ ବିଷ ।
ସବୁ ଦେବତାଏ କି ସେ ଏକରୂପ ଧରି
ଅନିରୁଦ୍ଧ ରୂପ ଲଭି ବାଦ ପରିହରି ।
ଗମନେ ଚରଣରେଣୁ ଜଗ ଆଚ୍ଛାଦିଲା
ଜନକର ଉହାଡ଼ କି ଅନ୍ଧାର ଘୋଟିଲା ।
ନିର୍ମଳ ଚନ୍ଦ୍ରମା ଉଷା ବଦନ ଉଜ୍ଜ୍ୱଳେ
ସାନନ୍ଦେଣ ପଥ ବନ୍ଧୁ ଦୀପବର୍ତ୍ତି ମିଳେ ।
ଆସନ୍ତି ଯୁବଂଶ ଏକ ଆରେକକୁ ଗଳି
ଗୁରୁ ଗୌରବ ତେଜନ୍ତି ଉଚ୍ଛୁକ ବଢ଼ାଇ ।
ହାସ ଗୁନ୍ଥୁଥିଲା କେହୁ ହସାଇଲା ବାଟେ
ବସନ ଅଧେ ଫିଟିଲା ଧାଇଁବା ଉଚାଟେ ।
ଖଣା ବାଉଥିଲା କେହୁ ଗମା ଛୁଟି ଗଲା
ସମ୍ଭ୍ରମେ କୁଚ ଆଉଁଶେ ଭ୍ରମ୍ପୀ ମଣି ବାଳା ।
କୁଳବଧୂମାନେ ଜଳା-ଗବାକ୍ଷରେ ରହିଁ

---

୯ । ତନୁ—ଦେହ; ଗଜରାଜ—ଐରାବତ, ମଣି—କୌସ୍ତୁଭ ମଣି; ହୟବର—ଉଚ୍ଚୈଃଶ୍ରବା ଅଶ୍ୱ, ଦର—ଶଙ୍ଖ; ବନ୍ଧସ୍ୱବ—ତାଙ୍କ ଗୃହିଣୀ, ସମୁଦ୍ରମନ୍ଥନରୁ ଯାହାସବୁ ବାହାରିଥିଲା, ସେ ସବୁ ଉଷା ଠାରେ ଏକାଧାରରେ ଥିଲା; ତାଙ୍କର ଦେହ ହେଲା ଲକ୍ଷ୍ମୀ, ଦନ୍ତ ହେଲା କୌସ୍ତୁଭମଣି, ହାସ ହେଲା ଶଙ୍ଖ, ଅଧର ହେଲା ଅମୃତ, ଗତି ହେଲା ଐରାବତ, ମୁଖ ହେଲା ଚନ୍ଦ୍ରମା, ଦେହର ଅଲଙ୍କାର ହେଲା ପାରିଜାତକ; ଦୃଷ୍ଟି ହେଲା ବିଷ । ଦେବତାମାନେ ସମୁଦ୍ରଜାତ ଦ୍ରବ୍ୟକୁ ବାଣ୍ଟି ନେଇଥିଲେ, କିନ୍ତୁ ଅନିରୁଦ୍ଧ

ସବୁ ପ୍ରଶଂସା କରନ୍ତି ଏକ ଯୋଗ ହୋଇ ।
ରାଜମାର୍ଗେ ବାର-ବିଳାସିନୀ ଉଭା ହୋଇ
ବାହୁ-ତୋରଣରେ କର-ପଲ୍ଲବ ଲମ୍ବାଇ ।
ଉଚ୍ଚ କୁଚ କରିଛନ୍ତି ମଙ୍ଗଳ କଳସ
କୁସୁମବୃଷ୍ଟି ପ୍ରାୟେକ ମନ୍ଦ ମନ୍ଦ ହାସ ।
କନକ କଦଳୀ ନିନ୍ଦେ ଜାନୁଯୁଗ ଶୋଭା
ଲୋଚନ ଶଫରୀ ସର୍ବ ମଙ୍ଗଳର ଶୋଭା । ୧୨
ଚନ୍ଦନ ଦୂର୍ବା ଅକ୍ଷତ ଦଧି ଅର୍ଘ୍ୟ ଘେନି
ବ୍ରାହ୍ମଣ ପକାନ୍ତେ ଶୁଭେ ହୁଳହୁଳି ଧ୍ୱନି ।
ନଗରେ ବିଜୟେ କଲେ ଅଖିଳମଙ୍ଗଳ
ପୁରବଧୂ ବନ୍ଦାପନ୍ତି ହରିପ୍ରିୟା-କୂଳ ।
ରୁକ୍ମିଣୀ ସନ୍ତତେ ସତ୍ୟଭାମା ଚୁମ୍ବ ଦେଇ
ପରମାନନ୍ଦ ଉଚ୍ଛବ ଦ୍ୱାରବତୀ ହୋଇ ।
ଶୁଭଲଗ୍ନ ଯୋଗ ଘେନି ବିଭା କଲେ ବେନି
ଯଥାବିଧି ଉଚିତ ବେଭାର ବେଳ ଘେନି ।
ଅନାଦି-ନାଥର ଏହୁ ବହୁରୂପ ଲୀଳା
ଲୋକ ରଞ୍ଜି ନିମନ୍ତେ ନାନା ଚରିତ କଲା ।

---

ସବୁ ଦେବତାଙ୍କ ରୂପର ସମଷ୍ଟି ହୋଇଥିବାରୁ ସେ ଉଷାଙ୍କୁ ଲାଭ କଲେ । ଦେବତାମାନଙ୍କ ଭିତରେ ବିବାଦର କାରଣ ରହିଲା ନାହିଁ; ୧୦ । ସାନନ୍ଦେଣ— ଅତି ଆନନ୍ଦରେ, ରାଇ—ଡାକ; ୧୧ । ଉଚାଟେ—ଅସ୍ଥିର ହୋଇ, ଗବାକ୍ଷ—ଝରକା, କାନ୍ଥରେ ଥିବା କଣା; ୧୨ । ବାରବିଳାସିନୀ —ବାରାଙ୍ଗନା, ବେଶ୍ୟା; ସେମାନଙ୍କର ବାହୁ ହେଲା ତୋରଣ, ହସ୍ତ ହେଲା ପତ୍ର, କୁଚ ହେଲା ମଙ୍ଗଳଘଟ, ହାସ ହେଲା ପୁଷ୍ପବୃଷ୍ଟି, ଜାନୁ ହେଲା

ବ୍ରହ୍ମାଙ୍କୁ ଗୋଚର ନୁହେଁ ମହିମା ଯାହାର
ବଚନେ କେ କହିବ ମନକୁ ଅଗୋଚର ।
ହରିର ଯେ ଅନୁଗତ ଲୀଳାରଙ୍ଗ ଯେତେ
ସାହିତ୍ୟ ସଙ୍ଗୀତ ନାନା କଉତୁକ ମତେ ।
ମହାଜଳରାଶି ମତ ପରିମାଣ ନାହିଁ
ଯେ ଯେତେ ପଶି ପାରଇ ତେତିକ ଜାଣଇ ।
ତଥାପି ବୁଦ୍ଧିରେ କେହୁ ବୋଲନ୍ତି ଅପାର
ଶାସ୍ତ୍ରଦୃଷ୍ଟିକ ଅଳପ ଅନୁଭବ ପାର ।
ରସିକ ସୁଜନ ଜନେ ବୁଝ ଏହୁ ରସ
ଶୁଣିଣ ସଫଳ କର ଉଷା-ଅଭିଳାଷ ।
ନୀଳଗିରି-ନାୟକ କମଳାଦେବୀ-ପତି
ତାହାର ପଦ୍ମପାଦକୁ ଭଜୁ ମୋର ମତି ।
କହଇ ଶିଶୁଶଙ୍କର ତୁଚ୍ଛ ବୁଦ୍ଧିହୀନ
ଦ୍ୱାଦଶ ଛାନ୍ଦରେ ଉଷା ହୋଇଲା ସଂପୂର୍ଣ୍ଣ । ୧୬

---

କଦଳୀ ଗଛ. ତଷ୍ଟୁ ହେଲା ମାଛ; ୧୩ । ଦୂର୍ବା—ଦୂବଘାସ, ଅକ୍ଷତ—ଖଣ୍ଡିଆ ନୋହିଥିବା ଅରୁଆ ଚାଉଳ, ଅର୍ଘ୍ୟ—ପୂଜା ଉପକରଣ, ଅଖିଳ ମଙ୍ଗଳ—ବିଶ୍ୱର ମଙ୍ଗଳକାରୀ ଶ୍ରୀକୃଷ୍ଣ; ହରିପ୍ରିୟାକୁଳ—ରୁକ୍ମିଣୀ ପ୍ରଭୃତି ଶ୍ରୀକୃଷ୍ଣଙ୍କ ରାଣୀମାନେ; ୧୪ । ଅନାଥନାଥ—ଶ୍ରୀକୃଷ୍ଣ, ଲୀଳା—କ୍ରୀଡ଼ା; ରଞ୍ଜ—ରଞ୍ଜାଇବା, ଆନନ୍ଦ ଦେବା, ଅଗୋଚର—ଅଜଣା; ୧୫ । ଲୀଳାରଙ୍ଗ—କ୍ରୀଡ଼ାକୌତୁକ, ମହାଜଳରାଶିମତ—ସମୁଦ୍ର ପରି; ୧୬ । ନୀଳଗିରି ନାୟକ— ଜଗନ୍ନାଥ, କମଳାଦେବୀ-ପତି—ଲକ୍ଷ୍ମୀପତି ।